# ମାର୍କ୍ସବାଦ-ଲେନିନବାଦ ଅଧ୍ୟୟନ ସୂତ୍ର

## (ସହାୟକ ପୁସ୍ତିକା)

ଭ୍ୟାସିଲ କ୍ରାପିଭିନ

# ଉପକ୍ରମଣିକା

ଲୋକେ ବହୁ ବାଟରେ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଗ୍ରହଣ କରି ପାରନ୍ତି ଏବଂ ଦୁନିଆର ବୈପ୍ଳବିକ ପୁନର୍ଜନ୍ମ ପ୍ରକ୍ରିୟାରେ ସକ୍ରିୟ ଅଂଶଗ୍ରହଣ କରିବାର ପ୍ରୟୋଜନୀୟତା ବିଭିନ୍ନ ମାର୍ଗରେ ଉପଲବ୍ଧି କରି ପାରନ୍ତି । ସାମାଜିକ ନ୍ୟାୟ ଓ ସାମ୍ୟ ଭଳି ମହତ୍ ଲକ୍ଷ୍ୟ ହାସଲ କରିବା ଉଦ୍ଦେଶ୍ୟରେ ଲୋକେ ଭିନ୍ନ ଭିନ୍ନ ପଥରେ ସାମିଲ ହୋଇ ପାରନ୍ତି । ନୂଆ ଦୁନିଆଟିଏ ଗଢ଼ିବାର ସଂଗ୍ରାମରେ ଜଣେ ଯେତେ ଶୀଘ୍ର ସାମିଲ ହୋଇ ପାରନ୍ତି ତାଙ୍କ ଜୀବନ ସେତେ ସାର୍ଥକ ହୋଇଥାଏ । ନୂଆ ସମାଜ ଗଠନରେ ଜଣେ ଯେତେ ମୂଲ୍ୟବାନ ଅବଦାନ ଦିଅନ୍ତି ତାଙ୍କ ନିଜର ବିକାଶ ସେତେ ବୃଦ୍ଧିମନ୍ତ ହୁଏ ଓ ଏକ କିସମର ମଣିଷ ଭାବେ ସେ ସେତେ ପ୍ରତିଭାତ ହୁଅନ୍ତି ।

ଲୋକର ବିଶ୍ୱ ଦୃଷ୍ଟିଭଙ୍ଗୀ, ତାଙ୍କର ବୈଜ୍ଞାନିକ ଶିକ୍ଷା ଓ ନୈତିକ ଚରିତ୍ର ଗଠନ, ସମାଜବାଦୀ ମନୋଭାବାପନ୍ନ ମଣିଷର ସ୍ୱତନ୍ତ୍ର ଗୁଣାବଳୀର ବିକାଶ—ଏସବୁ ସହଜ ସାଚ୍ଛନ୍ଦ୍ୟ ହୋଇଥାଏ ମାର୍କସବାଦ-ଲେନିନବାଦ ଅଧ୍ୟୟନ ଦ୍ୱାରା, ସମାଜବାଦୀ ନିର୍ମାଣ କାର୍ଯ୍ୟ ସହିତ ପରିଚିତ ହେବା ଦ୍ୱାରା । ସେହି କାରଣରୁ ସମାଜବାଦୀ ଦେଶ ଗୋଷ୍ଠୀ ଏବଂ ସମାଜବାଦୀ ଅଭିମୁଖ୍ୟ ଗ୍ରହଣ କରିଥିବା ଦେଶ ଗୋଷ୍ଠୀର ଜନସାଧାରଣ ଓ ସେମାନଙ୍କର ବିପ୍ଳବୀ ସାରଥୀମାନେ ମାର୍କସବାଦ-ଲେନିନବାଦ ଅଧ୍ୟୟନ କରିବା ଏବଂ ସମାଜବାଦୀ ନିର୍ମାଣ କାର୍ଯ୍ୟ ସହିତ ସଂଶ୍ଳିଷ୍ଟ ହେବା ପାଇଁ ଏତେ ଆଗ୍ରହ ପ୍ରକାଶ କରିଥାନ୍ତି ।

ଆଜି ସାରା ଧରଣୀରେ ମାର୍କସବାଦ-ଲେନିନବାଦ ହେଉଛି ସବୁଠାରୁ ପ୍ରଭାବଶାଳୀ ମତାଦର୍ଶ । ଆଫ୍ରିକା ମହାଦେଶରେ ମଧ୍ୟ, ବିଶେଷକରି ଆଙ୍ଗୋଲା, ମୋଜାମ୍ବିକ, ଇଥିଓପିଆ, ଗିନି-ବିସାଉ, କଙ୍ଗୋ, ତାନ୍‌ଜାନିଆ, ଜିମ୍ବାବ୍‌ୱେ, ନାଇଜେରିଆ, ଜାମ୍ବିଆ, ସାଓ ଟୋମେ ଓ ପ୍ରିନ୍‌ସିପେ ଏବଂ କେପ ଭର୍ଦେ ଦ୍ୱୀପପୁଞ୍ଜରେ ଜନସାଧାରଣଙ୍କ ମଧ୍ୟରେ ଏହି ତତ୍ତ୍ୱର ଚର୍ଚ୍ଚା ଅଧିକରୁ ଅଧିକ ବ୍ୟାପକ ହେବାର ଆମେ ଦେଖୁଥାଉଁ ।

ମାର୍କସବାଦ ଲେନିନବାଦ ସମ୍ବନ୍ଧରେ ଏହାର ଅଙ୍ଗବସ୍ତୁ ଯଥା :— ଦର୍ଶନ, ରାଜନୈତିକ, ଅର୍ଥନୀତି ଓ ବୈଜ୍ଞାନିକ ସାମ୍ୟବାଦ ସମ୍ପର୍କରେ ଜ୍ଞାନ ଏବଂ ଅନ୍ୟ ଦେଶଗୁଡ଼ିକରେ ସମାଜବାଦ ପାଇଁ ସଂଗ୍ରାମର ଅଭିଜ୍ଞତା

# ମାର୍କସବାଦ-ଲେନିନବାଦ ଅଧ୍ୟୟନ ସୂତ୍ର

(ସହାୟକ ପୁସ୍ତିକା)

ଲେଖକ—ଭ୍ୟାସିଲି କ୍ରାପିଭିନ

ପ୍ରକାଶକ—ନବଯୁଗ ଗ୍ରନ୍ଥାଳୟ
ବଜ୍ରକବାଟି ରୋଡ଼, କଟକ-୭୫୩୦୦୧

ମୁଦ୍ରଣ—ନବଯୁଗ ପ୍ରେସ
ପାଲ୍ଲଡପଡ଼ା, କଟକ-୭୫୩୦୦୨

୧ମ ମୁଦ୍ରଣ—୧୯୮୪

ଦାମ—ଛଅ ଟଙ୍କା ମାତ୍ର

# ସୂଚୀ

# ଉପକ୍ରମଣିକା

ଲୋକେ ବହୁ ବାଟରେ ଏକ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଗ୍ରହଣ କରି ପାରନ୍ତି ଏବଂ ଦୁନିଆର ବୈପ୍ଳବିକ ପୁନର୍ଜନ୍ମ ପ୍ରକ୍ରିୟାରେ ସକ୍ରିୟ ଅଂଶଗ୍ରହଣ କରିବାର ପ୍ରୟୋଜନୀୟତା ବିଭିନ୍ନ ମାର୍ଗରେ ଉପଲବ୍ଧି କରି ପାରନ୍ତି । ସାମାଜିକ ନ୍ୟାୟ ଓ ସାମ୍ୟ ଭଳି ମହତ୍ତ୍ୱ ଲକ୍ଷ୍ୟ ହାସଲ କରିବା ଉଦ୍ୟମରେ ଲୋକେ ଭିନ୍ନ ଭିନ୍ନ ପଥରେ ସାମିଲ ହୋଇ ପାରନ୍ତି । ନୂଆ ଦୁନିଆଟିଏ ଗଢ଼ିବାର ସଂଗ୍ରାମରେ ଜଣେ ଯେତେ ଶୀଘ୍ର ସାମିଲ ହୋଇ ପାରନ୍ତି ତାଙ୍କ ଜୀବନ ସେତେ ସାର୍ଥକ ହୋଇଥାଏ । ନୂଆ ସମାଜ ଗଠନରେ ଜଣେ ଯେତେ ମୂଲ୍ୟବାନ ଅବଦାନ ଦିଅନ୍ତି ତାଙ୍କ ନିଜର ବିକାଶ ସେତେ ତ୍ୱରାନ୍ୱିତ ହୁଏ ଓ ଏକ କମ୍ୟୁନିଷ୍ଟ ମଣିଷ ଭାବେ ସେ ସେତେ ପ୍ରତିଷ୍ଠିତ ହୁଅନ୍ତି ।

ଲୋକର ବିଶ୍ୱ ଦୃଷ୍ଟିଭଙ୍ଗୀ, ତାଙ୍କର ବୈଜ୍ଞାନିକ ଶିକ୍ଷା ଓ ନୈତିକ ଚରିତ୍ର ଗଠନ, ସମାଜବାଦୀ ମନୋଭାବାପନ୍ନ ମଣିଷର ସ୍ୱତନ୍ତ୍ର ଗୁଣାବଳୀର ବିକାଶ—ଏସବୁ ସହଜ ସ୍ୱାଚ୍ଛନ୍ଦ୍ୟ ହୋଇଥାଏ ମାର୍କସବାଦ-ଲେନିନବାଦ ଅଧ୍ୟୟନ ଦ୍ୱାରା, ସମାଜବାଦୀ ନିର୍ମାଣ କାର୍ଯ୍ୟ ସହିତ ପରିଚିତ ହେବା ଦ୍ୱାରା । ସେହି କାରଣରୁ ସମାଜବାଦୀ ଦେଶ ଗୋଷ୍ଠୀ ଏବଂ ସମାଜବାଦୀ ଅଭିମୁଖ୍ୟ ଗ୍ରହଣ କରିଥିବା ଦେଶ ଗୋଷ୍ଠୀର ଜନସାଧାରଣ ଓ ସେମାନଙ୍କର ବିପ୍ଳବୀ ସାରଥୀମାନେ ମାର୍କସବାଦ-ଲେନିନବାଦ ଅଧ୍ୟୟନ କରିବା ଏବଂ ସମାଜବାଦୀ ନିର୍ମାଣ କାର୍ଯ୍ୟ ସହିତ ସଂଶ୍ଳିଷ୍ଟ ହେବା ପାଇଁ ଏତେ ଆଗ୍ରହ ପ୍ରକାଶ କରିଥାନ୍ତି ।

ଆଜି ସାରା ଧରଣୀରେ ମାର୍କସବାଦ-ଲେନିନବାଦ ହେଉଛି ସବୁଠାରୁ ପ୍ରଭାବଶାଳୀ ମତାଦର୍ଶ । ଆଫ୍ରିକା ମହାଦେଶରେ ମଧ୍ୟ, ବିଶେଷକରି ଆଙ୍ଗୋଲା, ମୋଜାମ୍ବିକ, ଇଥିଓପିଆ, ଗିନି-ବିସାଉ, କଙ୍ଗୋ, ତାନ୍‌ଜାନିଆ, ଜିମ୍ବାବ୍‌ୱେ, ନାଇଜେରିଆ, ଜାମ୍ବିଆ, ସାଓ ଟୋମେ ଓ ପ୍ରିନ୍‌ସିପେ ଏବଂ କେପ ଭର୍ଦେ ଦ୍ୱୀପପୁଞ୍ଜରେ ଜନସାଧାରଣଙ୍କ ମଧ୍ୟରେ ଏହି ତତ୍ତ୍ୱର ଚର୍ଚ୍ଚା ଅଧିକରୁ ଅଧିକ ବ୍ୟାପକ ହେବାର ଆମେ ଦେଖୁଥାଉଁ ।

ମାର୍କସବାଦ ଲେନିନବାଦ ସମ୍ବନ୍ଧରେ ଏହାର ଅଙ୍ଗୀଭୂତ ଯଥା :—ଦର୍ଶନ, ରାଜନୈତିକ, ଅର୍ଥନୀତି ଓ ବୈଜ୍ଞାନିକଭିତ୍ତିକ ସାମ୍ୟବାଦ ସମ୍ପର୍କରେ ଜ୍ଞାନ ଏବଂ ଅନ୍ୟ ଦେଶଗୁଡ଼ିକରେ ସମାଜବାଦ ପାଇଁ ସଂଗ୍ରାମର ଅଭିଜ୍ଞତା

ସମ୍ପର୍କରେ ଉପଲବ୍ଧି ପ୍ରତ୍ୟେକ ବ୍ୟକ୍ତିର ତାର୍କିକ-ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ପ୍ରଶସ୍ତ କରିଥାଏ । ତତ୍ସହିତ ମାର୍କସବାଦ-ଲେନିନବାଦ ବିଶ୍ୱ ସମ୍ପର୍କରେ ବିଜ୍ଞାନଭିତ୍ତିକ ଜ୍ଞାନ ଲାଭ କରିବାର ଏବଂ ବିଶ୍ୱର ବୈପ୍ଳବିକ ରୂପାନ୍ତର ଘଟାଇବାର ପଦ୍ଧତି ରୂପେ କାର୍ଯ୍ୟ କରିଥାଏ ମାର୍କସବାଦ-ଲେନିନବାଦ ତତ୍ତ୍ୱ ମଣିଷକୁ ସାହାଯ୍ୟ କରେ ଐତିହାସିକ ବିକାଶର ସମୀଚୀନତାକୁ ହୃଦୟଙ୍ଗମ କରିବା ପାଇଁ । ସମାଜକୁ ଏହା ସାହାଯ୍ୟ କରେ ତା'ର ସମସ୍ୟା ସମାଧାନ, ଲକ୍ଷ୍ୟସାଧନ ଓ ବାଧାବିଘ୍ନ ଅତିକ୍ରମ କରିବାରେ ସମର୍ଥ ହେବା ପାଇଁ ।

ମାର୍କସବାଦ-ଲେନିନବାଦ ଅଧ୍ୟୟନ ଦ୍ୱାରା ବୈପ୍ଳବିକ କର୍ମକାଣ୍ଡରେ ନିୟୋଜିତ ମଣିଷର ସୃଜନାତ୍ମକ ଚିନ୍ତା ଓ ସୂକ୍ଷ୍ମଦର୍ଶୀ ହୋଇପାରିବାର ସାମର୍ଥ୍ୟ ବିକାଶଲାଭ କରେ, ପ୍ରଗାଢ଼ ମତାଦର୍ଶଗତ ଦୃଢ଼ ବିଶ୍ୱାସ ତଥା ବଳିଷ୍ଠ ନୈତିକ ଗୁଣରାଜି ଲାଭ ହୋଇଥାଏ । ତଦ୍ୱାରା ସେ ବିଶ୍ୱର ବୈପ୍ଳବିକ ରୂପାନ୍ତର କାର୍ଯ୍ୟରେ ସକ୍ରିୟ ଭୂମିକାରେ ଅବତୀର୍ଣ୍ଣ ହେବାକୁ ପ୍ରେରଣା ପାଇଥାଏ ।

ମାର୍କସବାଦୀ-ଲେନିନବାଦୀ ପୃଷ୍ଠଭୂମି ଥିଲେ ଜୀବନବ୍ୟାପୀ ଆତ୍ମଶିକ୍ଷା ପାଇଁ ତାହା ଆଧାର ସ୍ୱରୂପ କାର୍ଯ୍ୟ କରିଥାଏ । ଯାହାଙ୍କର ଏହି ପୃଷ୍ଠଭୂମି ରହିଛି ସେ ନିରବଚ୍ଛିନ୍ନ ଅଧ୍ୟୟନରେ ବ୍ୟାପୃତ ରହି ପାରିବେ, ରାଜନୈତିକ, ବୈଜ୍ଞାନିକ, ଓ ସାହିତ୍ୟିକ ଗ୍ରନ୍ଥାବଳୀରୁ ଆପଣାଛାଏଁ ଜ୍ଞାନ ଆହରଣ କରିପାରିବାକୁ ସମର୍ଥ ହେବେ, ସମ୍ବାଦପତ୍ର ପରିବେଷିତ ଖମ୍ବାଦରୁ ଓ ବୈଜ୍ଞାନିକ ଜୀବନର ଘଟଣାବଳୀରୁ ସଠିକ ସିଦ୍ଧାନ୍ତରେ ଉପନୀତ ହୋଇ ପାରିବେ । ଆଜି ଯେଉଁଭଳି ସମ୍ବାଦ ପରିବେଷଣ ଜଗତରେ ବିସ୍ଫୋରଣ ଘଟୁଛି ସେଥିରେ ଏକଥାଟି ବିଶେଷ ଗୁରୁତ୍ୱପୂର୍ଣ୍ଣ । ଲିଓନିଦ୍ ବ୍ରେଜନେଭଙ୍କ ଉକ୍ତି ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ : "ଆଧୁନିକ ବିଶ୍ୱରେ ମଣିଷର ଜ୍ଞାନ ଆହରଣରେ ପିପାସା ଯେଉଁଭଳି ପ୍ରଚଣ୍ଡ ବେଗରେ ବୃଦ୍ଧି ପାଉଛି, ସେଥିରେ ଏକ ନିର୍ଦ୍ଦିଷ୍ଟ ପରିମାଣର ଘଟଣା ଅବହିତ ହୋଇ ସନ୍ତୁଷ୍ଟ ରହିବା ଆଉ ସମ୍ଭବ ନୁହେଁ । ଅତଏବ ଯୁବକ ଯୁବତୀମାନଙ୍କୁ ଆପଣାଛାଏଁ ଜ୍ଞାନ ଆହରଣ କରିବାର ଓ ବୈଜ୍ଞାନିକ ତଥା ରାଜନୈତିକ ସମ୍ବାଦ ପ୍ରବାହର 'ପ୍ରଚଣ୍ଡତା ଭିତରେ ନିଜର ଯୋଗସୂତ୍ର ଖୋଜି ପାଇବାର ସାମର୍ଥ୍ୟ ଲାଭ କରିବା ପାଇଁ ପ୍ରବୋଧିତ କରିବା ଅତି ଗୁରୁତ୍ୱପୂର୍ଣ୍ଣ ।" (ସୋଭିଏତ୍ ୟୁନିୟନ କମ୍ୟୁନିଷ୍ଟ ପାର୍ଟିର ୨୬ ତମ କଂଗ୍ରେସ ଦଲିଲପତ୍ର ଓ ପ୍ରସ୍ତାବାବଳୀ । ନୋଭଷ୍ଟି ପ୍ରେସ୍ ଏଜେନ୍ସି ପବ୍ଲିଶିଂ ହାଉସ୍, ମସ୍କୋ ୧୯୮୧, ପୃ ୯୩) ।

ଆତ୍ମଶିକ୍ଷା ଉଦ୍ୟମରେ ଓ ଶେଷରେ, ସମାଜବାଦ ତଥା ସାମ୍ୟବାଦ ପାଇଁ ଦୈନନ୍ଦିନ ସଂଗ୍ରାମରେ ରାଜନୈତିକ ପରିପକ୍ୱତା ଲାଭ ଉଦ୍ୟମରେ

ମାର୍କସବାଦ-ଲେନିନବାଦ ତତ୍ତ୍ୱ ଏକ ଜଟିଳ ଦୁର୍ବିଷୟ । ପୃଥିବୀର ପ୍ରଥମ ସମାଜବାଦୀ ରାଷ୍ଟ୍ରର ପ୍ରତିଷ୍ଠାତା ଲେନିନ କହିଥିଲେ : କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟକ ସତ୍ୟାସତ୍ୟ କିଛି ପରିମାଣରେ ସ୍ୱାଧୀନ ଅଧ୍ୟବସାୟ ବିନା ମିଳିପାରିବ ନାହିଁ ; ଆଉ ଯେ ଏଭଳି ଅଧ୍ୟବସାୟକୁ ଭୟ କରିବ ସେ ହୁଏତ ସତ୍ୟ ସତ୍ୟ ପାଖରେ ପହଞ୍ଚି ପାରିବ ନାହିଁ ।'' (ଭି ଆଇ ଲେନିନ, ରଚନାବଳୀ, ୧୯ଶ ଖଣ୍ଡ, ପୃ-୧୪୯-୧୫୦) ।

ଜ୍ଞାନ ଆହରଣ ପାଇଁ ସ୍ୱାଧୀନ ଅଧ୍ୟବସାୟ ସେହି ଜ୍ଞାନକୁ ନିଜର ଦୃଢ଼ ବିଶ୍ୱାସରେ ପରିଣତ କରିବା ପକ୍ଷରେ ଅପରିହାର୍ଯ୍ୟ । ସ୍ୱାଧୀନ ଅଧ୍ୟବସାୟ ଓ ଚର୍ଚ୍ଚା ଜରିଆରେ ଲବ୍ଧ ଏହି ଦୃଢ଼ ବିଶ୍ୱାସ ଲୋକର ଜୀବନର ଆଭିମୁଖ୍ୟ ଓ ଦୈନନ୍ଦିନ ଆଚରଣ ପାଇଁ ଭିତ୍ତି ସ୍ୱରୂପ କାର୍ଯ୍ୟ କରେ । ଜଟିଳ ତାତ୍ତ୍ୱିକ ସମସ୍ୟାଗୁଡ଼ିକୁ ପରୀକ୍ଷା ନିରୀକ୍ଷା କରି ହୃଦୟଙ୍ଗମ କରିବାକୁ ସମର୍ଥ ହେଲେ ହିଁ ଜଣେ ଲୋକ ନିଜର ବିଶ୍ୱାସରେ ଅଟଳ ରହିପାରିବ ଓ ସେ ବିଶ୍ୱାସକୁ ଯେ କୌଣସି ସମୟରେ ଯେ କୌଣସିଠାରେ ଅତୁଟ ରଖିପାରିବ ।

ଆମେ ଆଶା କରୁ ଯେ ଏହି ପୁସ୍ତିକାରେ ସନ୍ନିବେଶିତ ପରାମର୍ଶଗୁଡ଼ିକ ପାଠକମାନଙ୍କୁ ମାର୍କସବାଦ-ଲେନିନବାଦ ସମ୍ବଳିତ ଗ୍ରନ୍ଥମାନ ଅଧ୍ୟୟନ କରିବାକୁ ଜଟିଳ ତାତ୍ତ୍ୱିକ ସମସ୍ୟାମାନ ହୃଦୟଙ୍ଗମ କରିବାରେ ଓ ସେଗୁଡ଼ିକୁ ସମାଧାନ କରିବାର ପଥ ଖୋଜିବାରେ ସାହାଯ୍ୟ କରିବ ।

# ୧ମ ପ୍ରସଙ୍ଗ

# ମାର୍କସବାଦୀ-ଲେନିନବାଦୀ ଶିକ୍ଷାର ସାରକଥା ଓ ଲକ୍ଷ୍ୟ

## (୧) ବୈପ୍ଳବିକ ଚରିତ୍ର ଗଠନ ଓ ପ୍ରଶିକ୍ଷଣର ପ୍ରଧାନ ଲକ୍ଷ୍ୟ

ବିଶ୍ୱର ବୈପ୍ଳବିକ ପୁନର୍ଜନ୍ମ ପ୍ରକ୍ରିୟା ଦେଶ ମହାଦେଶର ସୀମା ଲଙ୍ଘି ସର୍ବବ୍ୟାପୀ ହେବାରେ ଲାଗିଛି । ଏ ପ୍ରକ୍ରିୟାରେ ଅଧିକରୁ ଅଧିକ ଶ୍ରମଜୀବୀ ଏବଂ ଜାତି ପରେ ଜାତି ସଂଶ୍ଳିଷ୍ଟ ହେବାରେ ଲାଗିଛନ୍ତି । ସେମାନଙ୍କ ବିପ୍ଳବୀ ଅଗ୍ରଗାମୀ ବାହିନୀ ମାର୍କସବାଦୀ-ଲେନିନବାଦୀ ପାର୍ଟିମାନଙ୍କ ନେତୃତ୍ୱରେ ସେମାନେ ସମାଜର ମୌଳିକ ରୂପାନ୍ତର ପାଇଁ ଆନ୍ତର୍ଜାତିକ ଉତ୍ତେଜନା ପ୍ରଶମନ ପାଇଁ ଓ ଶାନ୍ତି ପାଇଁ ଚାଲିଥିବା ସଂଗ୍ରାମରେ ଯୋଗ ଦେଉଛନ୍ତି । ସମାଜବାଦୀ ଦେଶ ଗୋଷ୍ଠୀ ଭୁକ୍ତ ଦେଶମାନଙ୍କରେ ଓ ସମାଜବାଦୀ ଆଭିମୁଖ୍ୟ ଗ୍ରହଣ କରିଥିବା ଦେଶମାନଙ୍କରେ ମଧ୍ୟ ସାମାଜିକ ଜୀବନର ପ୍ରତ୍ୟେକ ବିଭାଗରେ ରୂପାନ୍ତର ଉଲ୍ଲେଖଯୋଗ୍ୟ ଭାବେ ଉନ୍ନତ ସ୍ତରରେ ଉପନୀତ ହୋଇଛି ।

ଏହିସବୁ ପ୍ରଗାଢ଼ ସାମାଜିକ ପରିବର୍ତ୍ତନଗୁଡ଼ିକ ଫଳରେ ଶିକ୍ଷାମୂଳକ କାର୍ଯ୍ୟ, ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ତିଆରି କରିବାର କାର୍ଯ୍ୟ ବୈପ୍ଳବିକ ଦୀକ୍ଷା ଗ୍ରହଣ ଓ ଜୀବନରେ ସକ୍ରିୟ ଭୂମିକାରେ ଅବତୀର୍ଣ୍ଣ ହେବାର ଆଗ୍ରହ ସୃଷ୍ଟି କରିବାର କାର୍ଯ୍ୟ ପାଇଁ ବୃହତ୍ତର ଉଦ୍ୟମ ପ୍ରୟୋଜନ ହେଉଛି । ଲେନିନ କହିଥିଲେ, "ଏକ ଅଖଣ୍ଡ ବୈପ୍ଳବିକ ବିଶ୍ୱ ଦୃଷ୍ଟିକୋଣର ବିକାଶ ଘଟାଇବା ମୁଖ୍ୟ କାର୍ଯ୍ୟ ବୋଲି ଆମେ ବିବେଚନା କରୁ ।" (ଭି ଆଇ ଲେନିନ, ରଚନାବଳୀ, ୬ଷ୍ଠ ଖଣ୍ଡ, ପୃ ୫୦୭) । ଏବେ ନାନା ଦେଶରେ ମାର୍କସବାଦୀ ଲେନିନବାଦୀ ପାର୍ଟିଗୁଡ଼ିକ ଏବଂ ବୈପ୍ଳବିକ-ଗଣତାନ୍ତ୍ରିକ ସଂଗଠନ ସମୂହ ଏହି କର୍ତ୍ତବ୍ୟ ସମାଧାନ କରୁଛନ୍ତି ।

ସାମାଜିକ ଅନ୍ୟାୟ ବିରୁଦ୍ଧରେ, ଜନଗଣତନ୍ତ୍ର ଓ ସମାଜବାଦ ପାଇଁ ବିବେକୀ ଯୋଦ୍ଧାର ଦୃଷ୍ଟିଭଙ୍ଗୀ ଗଢ଼ି ଉଠେ ମାର୍କସବାଦ ଲେନିନବାଦର ଦାର୍ଶନିକ ଅର୍ଥନୈତିକ ଓ ସାମାଜିକ-ରାଜନୈତିକ ମୂଳ ନୀତିଗୁଡ଼ିକର ମୌଳ ବ୍ୟାଖ୍ୟାରୁ

ସୃଜନଶୀଳ ଭାବେ ଅଂଶଗ୍ରହଣ କରିବା ଜରିଆରେ, ତାହାକୁ ପ୍ରତ୍ୟେକଙ୍କର ବ୍ୟକ୍ତିଗତ ଦୃଢ଼ ବିଶ୍ୱାସ ଓ ଦୈନନ୍ଦିନ ଜୀବନରେ କର୍ମନିର୍ଦ୍ଦେଶିକାରେ ପରିଣତ କରିବା ଦ୍ୱାରା ।

ଲୋକେ ବୈପ୍ଲବିକ ଦୀକ୍ଷା ଓ ତାଲିମ ପାଇ ଗଢ଼ି ହେବା ଆଜିର ସାମାଜିକ ବିକାଶ ପାଇଁ ଏକ ପ୍ରମୁଖ ଆବଶ୍ୟକତା, ସାମାଜିକ ପ୍ରଗତି ପାଇଁ ଅପରିହାର୍ଯ୍ୟ ସର୍ତ୍ତ । ଲେନିନ କହିଥିଲେ : ଜନସାଧାରଣଙ୍କ ପ୍ରକୃତ ଶିକ୍ଷା ସେମାନଙ୍କର ସ୍ୱାଧୀନ ରାଜନୈତିକ ସଂଗ୍ରାମଠାରୁ, ବିଶେଷକରି ବୈପ୍ଲବିକ ସଂଗ୍ରାମଠାରୁ କୌଣସିମତେ ଅଲଗା ହୋଇପାରିବ ନାହିଁ । (ଭି ଆଇ ଲେନିନ, ରଚନାବଳୀ, ୨୩ଶ ଖଣ୍ଡ, ପୃ- ୪') ।

ଏହି ମୂଳନୀତିଟିକୁ ଅନୁସରଣ କରି ମାର୍କସବାଦୀ-ଲେନିନବାଦୀ ପାର୍ଟିମାନେ ଶ୍ରମଜୀବୀମାନଙ୍କ ମଧ୍ୟରେ ଜ୍ଞାନ, କମ୍ୟୁନିଷ୍ଟ ବିଶ୍ୱାସ ଓ ବାସ୍ତବ କର୍ମକାଣ୍ଡର ସଂଶ୍ଳେଷ ସ୍ୱରୂପ ଏକ ବୈପ୍ଲବିକ ମତାଦର୍ଶ ଉଦ୍ରେକ କରିବା ପାଇଁ ବ୍ରତୀ ହେଉଛନ୍ତି; ସେମାନଙ୍କ ମଧ୍ୟରେ ଜୀବନରେ ସକ୍ରିୟ ଭୂମିକାରେ ଅବତୀର୍ଣ୍ଣ ହେବାର ଆଗ୍ରହ ଓ ସାମାଜିକ କର୍ତ୍ତବ୍ୟ ପ୍ରତି କଥା ଓ କାର୍ଯ୍ୟର ମେଳ ଥିବା ଏକ ବସ୍ତୁରବନ୍ତ ମନୋଭାବ ସୃଷ୍ଟି କରିବାରେ ବ୍ରତୀ ହେଉଛନ୍ତି ।

ଏକ ନୂତନ ସମାଜ ଗଠନ ଲାଗି ଶିକ୍ଷା ବ୍ୟବସ୍ଥାର ଆମୂଳଚୂଳ ପୁନଃସଂଗଠନ ଅବଶ୍ୟମ୍ଭାବୀ—ତାହାହେଲେ ଯାଇ ସେ ସମାଜ ଲୋକଙ୍କ ସ୍ୱାର୍ଥ ପୂରଣ କରିବା ସଙ୍ଗେ ସଙ୍ଗେ ନୂଆ ମଣିଷ ତିଆରି କରିବାରେ ସାହାଯ୍ୟକାରୀ ହେବ ।

ନୂଆ ମଣିଷ ତିଆରି କରିବାରେ ଓ ମଣିଷର ବୈପ୍ଲବିକ ଶିକ୍ଷା ପ୍ରାପ୍ତିରେ ମାର୍କସବାଦୀ-ଲେନିନବାଦୀ ତତ୍ତ୍ୱର ଭୂମିକା କ'ଣ ?

ମାର୍କସବାଦ-ଲେନିନବାଦ ତତ୍ତ୍ୱ ଲୋକର ବିଜ୍ଞାନସିଦ୍ଧ-ତତ୍ତ୍ୱଗତ ଦୃଷ୍ଟିକୋଣକୁ ପ୍ରସାରିତ କରିବା ସଙ୍ଗେ ସଙ୍ଗେ ତାର ମତାଦର୍ଶଗତ-ରାଜନୈତିକ ଜ୍ଞାନର ସ୍ତରକୁ ଉନ୍ନତ କରିଥାଏ । ମଣିଷ ଭିତରେ ସମାଜବାଦ ଓ ସାମ୍ୟବାଦ ପ୍ରତି ଅନୁରକ୍ତି, ଆତ୍ମସଂଯମ, ସ୍ଥୈର୍ଯ୍ୟ, ସାମାଜିକ କର୍ମ ପ୍ରବୃତ୍ତି, ପ୍ରଚଳିତ ପ୍ରତିଷ୍ଠା ଓ ପ୍ରପଞ୍ଚଗୁଡ଼ିକର ମୂଲ୍ୟାୟନ କଲାବେଳେ ଶ୍ରେଣୀ ଦୃଷ୍ଟିକୋଣ, ମୌଳିକ ନୀତି-ଗୁଡ଼ିକ ପ୍ରତି ଉତ୍କୃଷ୍ଟ ଅନୁରକ୍ତି ଭଳି ସୁଗୁଣମାନ ଏହା ଜାଗ୍ରତ କରାଏ ।

ମାର୍କସବାଦ-ଲେନିନବାଦର ମୂଳ ନୀତିଗୁଡ଼ିକୁ ଓ ଜନତାର ଗଣତନ୍ତ୍ର ତଥା ସମାଜବାଦ ପ୍ରତିଷ୍ଠା ଲାଗି ଚାଲିଥିବା ସଂଗ୍ରାମ ସହିତ ସେଗୁଡ଼ିକର ସମ୍ବନ୍ଧକୁ

ଅଧ୍ୟୟନ କରିବା ଦ୍ୱାରା ବିପ୍ଳବୀସୁଲଭ ଗୁଣାବଳୀର ବିକାଶ ଘଟେ । ସେ ଗୁଣ-ଗୁଡ଼ିକ ହେଲା ଦାୟିତ୍ୱବୋଧ, ନିଜଠାରୁ ଓ ନିଜ ପ୍ରଭାବାଧୀନ ଲୋକମାନଙ୍କ-ଠାରୁ କାର୍ଯ୍ୟ ଆଦାୟ କରିବାର ମନୋଭାବ, ମିଥ୍ୟାଚାର ପ୍ରତି ଆପୋଷହୀନ ମନୋଭାବ, ବାସ୍ତବ କାର୍ଯ୍ୟ କ୍ଷେତ୍ରରେ ସଂକଳ୍ପ ଓ ଲଢୁଆ ମନୋଭାବ, ବିପ୍ଳବୀ ଆଦର୍ଶ ପ୍ରତି ସମ୍ମାନ, ଦେଶ ପ୍ରୀତି ଏବଂ ସର୍ବହରା ଆନ୍ତର୍ଜାତିକତା ପ୍ରତି ସମ୍ମାନ ।

## (୨) ଏକ ବିଜ୍ଞାନସମ୍ମତ ଭିତ୍ତିର ଆବଶ୍ୟକତା

ପୃଥିବୀର ସ୍ଥିତି ଓ ବିକାଶକୁ ନିୟନ୍ତ୍ରିତ କରୁଥିବା ନିୟମାବଳୀ ସମ୍ପର୍କରେ ବିଜ୍ଞାନଭିତ୍ତିକ ଜ୍ଞାନ ନଥିଲେ ପୃଥିବୀର ବୈପ୍ଳବିକ ରୂପାନ୍ତର କରିହେବା ସମ୍ଭବ ନୁହେଁ । ଏ ସମ୍ପର୍କରେ ସୋଭିଏତ ୟୁନିଅନ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ର କମିଟିର ସାଧାରଣ ସମ୍ପାଦକ ଓ ସୋଭିଏତ ୟୁନିଅନ ସର୍ବୋଚ୍ଚ ସୋଭିଏତର ଚେୟାରମ୍ୟାନ ୟୁରି ଆନ୍ଦ୍ରୋପୋଭ କହିଥିଲେ ଯେ ନିଷ୍ପତ୍ତିମୂଳକ କ୍ଷେତ୍ର ଗୁଡ଼ିକରେ "ରାଜନୈତିକ ଭାବେ ପରିପକ୍ୱ, ଦକ୍ଷ, ଉଦ୍‌ଯୋଗୀ, ସଂଗଠନ କ୍ଷମତାବିଶିଷ୍ଟ ଏବଂ ନୂତନତ୍ୱ ବୋଧ ଥିବା ଲୋକେ" ରହିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, "ତାହା ନହେଲେ ଆମ ଯୁଗରେ ଆଧୁନିକ ଉତ୍ପାଦନ ବ୍ୟବସ୍ଥାକୁ ସଫଳଭାବେ ଚଳାଇବା ସମ୍ଭବ ହେବନାହିଁ ।" (ଓ୍ୱାଇ ଭି ଆନ୍ଦ୍ରୋପୋଭ, ସୋଭିଏତ ୟୁନିୟନ କମ୍ୟୁନିଷ୍ଟ ପାର୍ଟି କେନ୍ଦ୍ରକମିଟି ର ପୂର୍ଣ୍ଣାଙ୍ଗ ବୈଠକରେ ପ୍ରଦତ୍ତ ଭାଷଣ ୧୯୮୨ ନଭେମ୍ବର '୨, ପୃ-୧୮) । ସମାଜବାଦୀ ଅଭିମୁଖ୍ୟର ମାର୍ଗରେ ସମାଜବାଦୀ ଓ ସାମ୍ୟବାଦୀ ସମାଜ ନିର୍ମାଣ ମାର୍ଗରେ ଉଦ୍ଭବ ସାମାଜିକ ବିକାଶର ସମସ୍ୟାବଳୀକୁ ସଫଳଭାବେ ସମାଧାନ କରିବାପାଇଁ କର୍ମୀମାନଙ୍କୁ ତଥା ଶ୍ରମଜୀବୀମାନଙ୍କର ବ୍ୟାପକ ଅଂଶକୁ ବୈଜ୍ଞାନିକ ତାଲିମ୍ ଦେବା ଅପରିହାର୍ଯ୍ୟ ।

ନୂଆ ନୂଆ ପ୍ରକ୍ରିୟା ଓ ପ୍ରପଞ୍ଚଗୁଡ଼ିକୁ ବ୍ୟାଖ୍ୟା କରିବା ପାଇଁ, ଯେ କୌଣସି ସମସ୍ୟା ଉପୁଜିଲେ ତାକୁ ସମାଧାନ କରିବା ପାଇଁ ଏକ ବୈଜ୍ଞାନିକ ଦୃଷ୍ଟିକୋଣ ଆମେ ମାର୍କସବାଦ-ଲେନିନବାଦରୁ ପାଇଥାଉଁ । ମାର୍କସବାଦ-ଲେନିନବାଦ ତତ୍ତ୍ୱ ଅଧ୍ୟୟନ କଲାବେଳେ ବୈଜ୍ଞାନିକ ନୀତିଟିର ନିମ୍ନଲିଖିତ ଗୁହିତାଗୁଡ଼ିକ ପ୍ରତି କଡ଼ାକଡ଼ି ଧ୍ୟାନ ଦେଇ ଅଧ୍ୟୟନ କରିବାକୁ ହେବ :

—ଅଧ୍ୟୟନ କରାଯାଉଥିବା ପ୍ରକ୍ରିୟା ଓ ପ୍ରପଞ୍ଚଗୁଡ଼ିକୁ କଳନା କରିବାରେ ବାସ୍ତବାନୁଗତ ;

—ଅଧ୍ୟୟନ କରାଯାଉଥିବା ପ୍ରକ୍ରିୟା ବା ପ୍ରପଞ୍ଚଗୁଡ଼ିକ ମଧ୍ୟରୁ କେଉଁ-ଗୁଡ଼ିକ ପ୍ରଧାନ ଓ ଅତ୍ୟାବଶ୍ୟକୀୟ ତାହା ନିରୂପଣ କରିବାର ଲକ୍ଷ୍ୟ ସହିତ ସେହି ପ୍ରକ୍ରିୟା ବା ପ୍ରପଞ୍ଚଗୁଡ଼ିକର ସବନ୍ଧ କ'ଣ ତାହା ପ୍ରକଟିତ କରିବାରେ ସମର୍ଥତା ;

—ପ୍ରପଞ୍ଚ ଓ ପ୍ରକ୍ରିୟାଗୁଡ଼ିକୁ ସେମାନଙ୍କର ବିକାଶ ଅବସରରେ ଯାଞ୍ଚ କରିବାକୁ ହେବ, ଅର୍ଥାତ୍ ସେଗୁଡ଼ିକର ପରିବର୍ତ୍ତନର ଆଭ୍ୟନ୍ତରୀଣ ଉତ୍ସପ୍ରତି ସମୁଚିତ ଧ୍ୟାନ ଦେଇ ଯାଞ୍ଚ କରିବାକୁ ହେବ ;

—ଅଧ୍ୟୟନ କରାଯାଉଥିବା ବିଷୟବସ୍ତୁପ୍ରତି ନିର୍ଦ୍ଦିଷ୍ଟ ଐତିହାସିକ ଦୃଷ୍ଟିକୋଣ ;

—ସାମାଜିକ ଅଭ୍ୟାସର ପ୍ରୟୋଜନୀୟତାଗୁଡ଼ିକର ବିଚାର ;

—ଅଧ୍ୟୟନାଧୀନ ପ୍ରପଞ୍ଚ ଗୁଡ଼ିକର ମୁଖ୍ୟ ଯୋଗସୂତ୍ରଟିକୁ ବିଶ୍ଳେଷଣ କରି ବାହାର କରିବାର କ୍ଷମତା ।

ଜୀବନର ପ୍ରକ୍ରିୟା ଓ ପ୍ରପଞ୍ଚଗୁଡ଼ିକର ଅଧ୍ୟୟନ ପ୍ରତି ଏକ ବାସ୍ତବାନୁଗ ଦୃଷ୍ଟିକୋଣ ଗ୍ରହଣ କରିବା ଅର୍ଥ ହେଉଛି ସେମାନେ ବାସ୍ତବ କ୍ଷେତ୍ରରେ ଯେଉଁଭଳି ବିଦ୍ୟମାନ ସେହିଭଳି ଭାବେ ବିଚାର କରିବା, ସେଗୁଡ଼ିକୁ ଜଟିଳ ବା ସରଳ ନକରି । ଏକ ବାସ୍ତବାନୁଗ ବିଶ୍ଳେଷଣ ପାଇଁ ଜୀବନର ଏକ ବାସ୍ତବବାଦୀ ଚିତ୍ର ଦେବା, ଜୀବନର ବିକାଶର ପ୍ରମୁଖ ପ୍ରବଣତାଗୁଡ଼ିକୁ ଏବଂ ଏହି ବିକାଶକୁ ଅବ-ଧାରିତ କରୁଥିବା ଶକ୍ତିଗୁଡ଼ିକୁ ପ୍ରକଟିତ କରିବା ।

ମାର୍କ୍ସବାଦୀ—ଲେନିନବାଦୀ ତତ୍ତ୍ୱର ସାରସ୍ୱତତା ରହିଛି ବାସ୍ତବତା ସହିତ ଓ ଜୀବନର ସତ୍ୟ ସହିତ ତାର ସଙ୍ଗତିରେ । ସାମାଜିକ ବିକାଶର ନିୟମା ବଳୀ ଆମକୁ ଅବଗତ କରାଇ ଏହି ତତ୍ତ୍ୱ ଆମକୁ ଦେଖାଇ ଦିଏ କିପରି ସାମାଜିକ ଓ ଜାତୀୟ ମୁକ୍ତି ଲାଗି ଲଢ଼ିବାକୁ ହେବ; କିପରି ଲଢ଼ିବାକୁ ହେବ ଜନତାର ଗଣତନ୍ତ୍ର; ସମାଜବାଦ ଓ ସାମ୍ୟବାଦ ହାସଲ କରିବା ଲାଗି । ଏହାର ସାରସ୍ୱତତା ଓ ବାସ୍ତବାନୁଗତା ଯୁଦ୍ଧଘୋଷଣା କରେ ଯାବତୀୟ ପ୍ରକାରର ଭାବବାଦ ବିରୁଦ୍ଧରେ, ଦଳଭୁକ୍ତିକୁ ଅଗ୍ରାହ୍ୟ କରୁଥିବା ବୁର୍ଜୁଆ ତତ୍ତ୍ୱ ବିରୁଦ୍ଧରେ ଓ ସାମାଜିକ ବିକାଶ ଏକ ସ୍ୱତଃସ୍ଫୂର୍ତ୍ତ ପ୍ରକ୍ରିୟା ବୋଲି ପ୍ରଚାର କରୁଥିବା ସଂଶୋଧନବାଦୀ ଅବଧାରଣା ବିରୁଦ୍ଧରେ । ଲେନିନଙ୍କର ଗୋଟିଏ ଇଂଗିତ ଏବାବତ୍‌ରେ ଅତୀବ ଗୁରୁତ୍ୱପୂର୍ଣ୍ଣ : ସାମାଜିକ ପ୍ରପଞ୍ଚଗୁଡ଼ିକ ସଂକ୍ରାନ୍ତ ଦୃଷ୍ଟିଭଙ୍ଗୀ ବାସ୍ତବତାଗୁଡ଼ିକର ଓ ବିକାଶର ବାସ୍ତବ ଗତିପଥର ବାସ୍ତବାନୁଗ ବିଶ୍ଳେଷଣ ଉପରେ ଆଧାରିତ ହେବାକୁ ବାଧ୍ୟ ।" (ଭି. ଆଇ. ଲେନିନ ରଚନାବଳୀ, ୨ୟ ଖଣ୍ଡ, ପୃ ୫୩୧) ।

ସାମାଜିକ ଜୀବନର ପ୍ରକ୍ରିୟା ଓ ପ୍ରପଞ୍ଚଗୁଡ଼ିକ ପ୍ରତି ଏକବସ୍ତୁନିଷ୍ଠ ଦୃଷ୍ଟିକୋଣ ସହିତ ସେଗୁଡ଼ିକର ସମ୍ୟକ୍ ପରୀକ୍ଷା ସଂଶ୍ଳିଷ୍ଟ । ଏଭଳି ପରୀକ୍ଷାକରି ଦେଖିବା ଦ୍ୱାରାହିଁ, ସଂଶ୍ଳିଷ୍ଟ ପ୍ରକ୍ରିୟା ବା ପ୍ରପଞ୍ଚଗୁଡ଼ିକରେ ନିହିତ ପ୍ରମୁଖ ଉପାଦାନଟିକୁ ନିର୍ଣ୍ଣୟ କରିବା ଦ୍ୱାରାହିଁ ଆମେ ସାରବସ୍ତୁଟିକୁ ହୃଦୟଙ୍ଗମ କରିପାରିବା ଓ ଆମ ସମ୍ମୁଖରେ ଥିବା କର୍ତ୍ତବ୍ୟମାନ ସମ୍ପାଦନ କରିବାର ଉପାୟ ସ୍ଥିର କରିପାରିବା । ବୈଜ୍ଞାନିକ ବସ୍ତୁନିଷ୍ଠତା ଆମକୁ ସାହାଯ୍ୟ କରୁଛି ମାର୍କ୍ସବାଦ—ଲେନିନବାଦର ଯେ କୌଣସି ତଥାକଥିତ ବିକଳ୍ପର ଅସାରତାକୁ ଉଦ୍‌ଘାଟନ କରିବାରେ ।

ଆମେ ଜାଣୁ ଯେ ଏବେକାର ସଂଶୋଧନବାଦୀ ଓ ଅର୍ଦ୍ଧାନୁସରଣପନ୍ଥୀମାନେ ବାସ୍ତବତାର ପ୍ରକ୍ରିୟା ଓ ପ୍ରପଞ୍ଚଗୁଡ଼ିକୁ ସମ୍ୟକଭାବେ ପରୀକ୍ଷା କରିବାର ପ୍ରୟୋଜନୀୟତାକୁ ଆଉ ଖୋଲାଖୋଲି ଅସ୍ୱୀକାର କରୁ ନାହାନ୍ତି । କିନ୍ତୁ ବାସ୍ତବାନୁଗତା ଓ ସମ୍ୟକତା ସମ୍ପର୍କରେ ସେମାନଙ୍କର ଯେଉଁ ଆଦର୍ଶ ଅବଧାରଣା ରହିଛି, ତାହା ବାସ୍ତବତାକୁ ବିଶ୍ଳେଷଣ କରିବା କ୍ଷେତ୍ରରେ ସେମାନଙ୍କୁ ଏକ ସଙ୍କୀର୍ଣ୍ଣ ଦୃଷ୍ଟିକୋଣର ଶିକାର କରୁଛି । ସମ୍ୟକତା ଭଳି ନୀତିଟିକୁ ସେମାନେ ଏକ ଆଦର୍ଶ ସ୍ତରରେ ବୁଝି ଓ ପ୍ରୟୋଗ କରି କାର୍ଯ୍ୟରେ ସମ୍ୟକ୍ ଅଧ୍ୟୟନର ସାରାର୍ଥଟିକୁ ବିକୃତ କରୁଛନ୍ତି ମାତ୍ର । ସଂଶ୍ଳିଷ୍ଟ ପ୍ରକ୍ରିୟ ବା ପ୍ରପଞ୍ଚର ସବୁ ବିଷୟକୁ ସେମାନେ ବିଚାରକୁ ନେଉଛନ୍ତି ବୋଲି କହୁଛନ୍ତି ସିନା, ପ୍ରକୃତ ପକ୍ଷେ ସେମାନେ ଏହାର ମୁଖ୍ୟ ଉପାଦାନଟିକୁ ଛାଡ଼ିଯାଉଛନ୍ତି । ଏହି ଧରଣର "ସମ୍ୟକ୍ତା" ଫଳରେ ପରିଶେଷରେ ଅଧ୍ୟୟନାଧୀନ ପ୍ରକ୍ରିୟା ବା ପ୍ରପଞ୍ଚର ସାରାଂଶକୁ ହୃଦୟଙ୍ଗମ କରିବା, ତା'ର ଉତ୍ପତ୍ତିସ୍ଥଳର ସନ୍ଧାନ ପାଇବା, ବିକାଶର ଆଙ୍ଗିକ ଓ ପ୍ରବଣତାକୁ ନିରୂପଣ କରିବା ଅସମ୍ଭବ ହୋଇ ପଡ଼ିବା ସାର ହୁଏ ।

ଏତାଦୃଶ ଦୃଷ୍ଟିଭଙ୍ଗୀ ବହନ କରୁଥିବା ଲୋକେ ବୈପ୍ଳବିକ ପ୍ରକ୍ରିୟା ଓ ଶ୍ରେଣୀ ସଂଗ୍ରାମର ବାସ୍ତବ ନିୟମାବଳୀକୁ ଦେଖି ପାରନ୍ତି ନାହିଁ, ସମାଜବାଦ ନିର୍ମାଣ କରିବାପାଇଁ ଏବଂ ସମାଜବାଦର ସିଦ୍ଧି ସାଫଲ୍ୟଗୁଡ଼ିକୁ ଶତ୍ରୁ କବଳରୁ ରକ୍ଷା କରିବା ପାଇଁ ଯେ ଶ୍ରମଜୀବୀମାନଙ୍କର ଏକ ଦୃଢ଼ ଶାସନ ବ୍ୟବସ୍ଥା ପ୍ରୟୋଜନ ତାହା ମଧ୍ୟ ଦେଖିପାରନ୍ତି ନାହିଁ ।

ମାର୍କ୍ସବାଦ—ଲେନିନବାଦ ଶିକ୍ଷା ଦିଏ ଯେ ଆଲୋଚ୍ୟ ପ୍ରକ୍ରିୟା ବା ପ୍ରପଞ୍ଚର ନିର୍ଯ୍ୟାସକୁ କେବଳ ତା'ର ବିକାଶର ଆଭ୍ୟନ୍ତରୀଣ ଉତ୍ସଗୁଡ଼ିକୁ ପ୍ରକଟନ କରିବାଦ୍ୱାରା ଓ ତାକୁ ସୃଷ୍ଟି କରିଥିବା ଦ୍ୱନ୍ଦ୍ୱଗୁଡ଼ିକୁ ବିଶ୍ଳେଷଣ କରିବା ଦ୍ୱାରାହିଁ ଅବହିତ ହେବା ସମ୍ଭବ ହୋଇଥାଏ । ପୁଣି ବିକାଶର ଆଭ୍ୟନ୍ତରୀଣ ଉତ୍ସଗୁଡ଼ିକୁ ପ୍ରକଟ କରାଇ ପାରିଲେ ଆମେ ତା'ର ପ୍ରମୁଖ ପ୍ରବଣତାଗୁଡ଼ିକୁ ଓ ତାର ଆତ୍ମପ୍ରକାଶର

ସମ୍ଭାବ୍ୟ ରୂପଗୁଡ଼ିକୁ ନିର୍ଦ୍ଧାରଣ କରିବାକୁ ସମର୍ଥ ହୋଇଥାନ୍ତି । ଏତଦ୍ୱାରା ସମାଜର ଅଗ୍ରଣୀ ଶକ୍ତିବର୍ଗଙ୍କର ଅର୍ଥାତ୍ ଶ୍ରମଜୀବୀମାନଙ୍କର ବିପ୍ଳବାତ୍ମକ କାର୍ଯ୍ୟ-କଳାପର ରଣକୌଶଳ ନିର୍ଣ୍ଣୟ କରିବା ସମ୍ଭବ ହୋଇଥାଏ ।

ଅଧିକନ୍ତୁ ଯେ କୌଣସି ସାମାଜିକ କର୍ମତତ୍ପରତା ଆରମ୍ଭ କରିବାକୁ ହେଲେ ଯେଉଁ ପରିବେଶରେ ତାହା ଆରମ୍ଭ କରିବାକୁ ହେବ ସେ ପରିବେଶର ମୂଲ୍ୟାୟନ ଓ ସ୍ପଷ୍ଟତା ଆବଶ୍ୟକ । ମାର୍କ୍ସଙ୍କର ପଦ୍ଧତି ହେଲା ପ୍ରଥମତଃ ନିର୍ଦ୍ଦିଷ୍ଟ ସମୟରେ ଏ ନିର୍ଦ୍ଦିଷ୍ଟ ପରିସ୍ଥିତିରେ ବିଦ୍ୟମାନ ଐତିହାସିକ ପ୍ରକ୍ରିୟାର ବାସ୍ତବ ଉପାଦାନକୁ ବିଚାରକୁ ନେବା ।

ନିର୍ଦ୍ଦିଷ୍ଟ ଐତିହାସିକ ଦୃଷ୍ଟିକୋଣର ଅର୍ଥ ହେଲା ଅଧ୍ୟୟନାଧୀନ ପ୍ରକ୍ରିୟାଟି ସଂଘଟିତ ହେଉଥିବା ସ୍ଥାନ ଓ କାଳର ବିଚାର । ପୁଣି "ଅନ୍ତର୍ନିହିତ ଐତିହାସିକ ସମ୍ପର୍କକୁ ବିସ୍ମୃତ ନହେବା, ସମସ୍ତ ପ୍ରପଞ୍ଚ ଇତିହାସରେ କିପରି ଆବିର୍ଭାବ ହେଲା ଓ ତା'ର ବିକାଶ କି କି ପ୍ରଧାନ ସୋପାନ ଦେଇ ଗତି କରିଥିଲା ସେହି ଦୃଷ୍ଟିରୁ ପ୍ରତ୍ୟେକ ପ୍ରଶ୍ନକୁ ବିଚାର କରି ଦେଖିବା ଏବଂ ସେହି ବିକାଶର ପୃଷ୍ଠଭୂମିରେ ଆଜି କି ପରିବେଶରେ ଏହା ପହଞ୍ଚିଛି ତ'କୁ ବିଚାର କରି ଦେଖିବା" ଏହି ନିର୍ଦ୍ଦିଷ୍ଟ ଐତିହାସିକ ଦୃଷ୍ଟିକୋଣର ଅନ୍ତର୍ଗତ । (ଭି. ଆଇ. ଲେନିନ୍, ରଚନାବଳୀ, ୨୯ଶ ଖଣ୍ଡ, ପୃ: ୪୭୩) ।

ଦୈନନ୍ଦିନ ଜୀବନ ଓ ସାମାଜିକ କର୍ମାଚରଣ ପ୍ରତିନିୟତ ନୂଆ ନୂଆ ପ୍ରଶ୍ନ ଉତ୍ଥାପନ କରେ ଯେଉଁଗୁଡ଼ିକର କି ବୈଜ୍ଞାନିକ ସମାଧାନ ହେତୁ ନିର୍ଣ୍ଣୟ ପ୍ରୟୋଜନ । ପରିବର୍ତ୍ତନଶୀଳ ପରିସ୍ଥିତିକୁ ଅଗ୍ରାହ୍ୟ କରି ଅଚଳ ମତଗୁଡ଼ିକୁ ଧରି ବସିବା ଓ ନିର୍ଦ୍ଦିଷ୍ଟ ଐତିହାସିକ ଅବସ୍ଥାକୁ ବିଚାର ନକରି ସେ ମତକୁ ପ୍ରୟୋଗ କରିବା ଆକ୍ଷରିକ ଅର୍ଥରେ ଠିକ୍ ହୋଇପାରେ କିନ୍ତୁ ମାର୍କ୍ସବାଦୀ ତତ୍ତ୍ୱର ମର୍ମ ଦୃଷ୍ଟିରୁ ଠିକ ନୁହେଁ ।

ଅବହିତ ଓ ବୈପ୍ଳବିକ କର୍ମାଚରଣ ପ୍ରତି ନିର୍ଦ୍ଦିଷ୍ଟ ଐତିହାସିକ ଦୃଷ୍ଟି-କୋଣର ଅର୍ଥ ହେଉଛି ବିଚାର୍ଯ୍ୟ ପ୍ରପଞ୍ଚର ସ୍ୱକୀୟ ଲକ୍ଷଣଗୁଡ଼ିକୁ ଅଗ୍ରାହ୍ୟ କରି ସାଧାରଣ ସିଦ୍ଧାନ୍ତଗୁଡ଼ିକୁ ଯନ୍ତ୍ରବତ୍ ପ୍ରୟୋଗ ନକରିବା ଓ ନିର୍ଦ୍ଦିଷ୍ଟ ଲକ୍ଷଣଗୁଡ଼ିକୁ ବିଚାରକୁ ନେବାର ଆଳରେ ସାଧାରଣ ନିୟମନୀତିକୁ ଅଗ୍ରାହ୍ୟ ନକରିବା ।

ବାସ୍ତବତାର ସଠିକ ଅବଧାରଣା, ସାମାଜିକ ପ୍ରକ୍ରିୟାର ବୈଜ୍ଞାନିକ ବିଶ୍ଳେଷଣ ତଥା ମୂଲ୍ୟାୟନ, ବୈପ୍ଳବିକ ପୁନର୍ଗଠନର କର୍ମତତ୍ପରତା ପାଇଁ ଅବ୍ୟର୍ଥ ରଣନୀତି ଓ ରଣକୌଶଳ ରଚନା, ବିକାଶର ନଗଦ ଓ ଦୀର୍ଘମିଆଦୀ କର୍ମ-ଯୋଜନା ପ୍ରଣୟନ ଲାଗି ପୁନର୍ଦ୍ଦିଷ୍ଟ ଐତିହାସିକ ଦୃଷ୍ଟିକୋଣ ହେଉଛି ଆରମ୍ଭ ବିନ୍ଦୁ ।

ବାସ୍ତବତାକୁ ଅନୁଶୀଳନ କଲାବେଳେ ଆମକୁ ଜନତାଙ୍କ ବୈପ୍ଳବିକ-ପୁନର୍ଗଠନାତ୍ମକ, ରଚନାତ୍ମକ କର୍ମାଚରଣର ପ୍ରୟୋଜନୀୟତାଗୁଡ଼ିକୁ ମନେ ରଖିବାକୁ ହେବ । ଏହି ଦୃଷ୍ଟିକୋଣ ଥିଲେ ଆମ ଚତୁଃପାର୍ଶ୍ୱର ବିଶ୍ୱକୁ ଅନୁଶାସିତ କରୁଥିବା ନିୟମାବଳୀକୁ ଅର୍ଥାତ ସାମାଜିକ ବିକାଶର ନିୟମାବଳୀକୁ ଆମେ ହୃଦୟଙ୍ଗମ କରିପାରିବା । ସାମାଜିକ କର୍ମାଚରଣର ପ୍ରୟୋଜନୀୟତାଗୁଡ଼ିକୁ ବିଚାରକୁ ନନେଲେ ଆମେ କେବେହେଲେ ଗୋଟିଏ ନିଜର ଅବହିତ ପାଇଁ ଲକ୍ଷ୍ୟ ନିର୍ଦ୍ଧାରଣ କରି ପାଇବା ନାହିଁ । କର୍ମାଚରଣର କଷ୍ଟିରେ ବ୍ୟତିରେକେ କେହି ସତ୍ୟଠାରୁ ଓ ଅସତ୍ୟକୁ ଅଲଗା କରି ଦେଖିପାରିବେ ନାହିଁ । ସାମାଜିକ ବିକାଶର ପ୍ରୟୋଜନୀୟତା ଓ କର୍ତ୍ତବ୍ୟଗୁଡ଼ିକୁ ବିଚାରକୁ ନେଲେ ହିଁ ଆମେ ତାହା ସମ୍ମୁଖରେ ଦେଖାଦେଉଥିବା ବାଧା ପ୍ରତିବନ୍ଧକ ଏବଂ ଦ୍ୱନ୍ଦ୍ୱବିରୋଧକୁ ଯଥା ସମୟରେ ଚିହ୍ନିବା ସଙ୍ଗେ ସଙ୍ଗେ ଅତିକ୍ରମ କରିପାରିବା ।

ବାସ୍ତବତାର ପ୍ରକ୍ରିୟା ଏବଂ ପ୍ରପଞ୍ଚଗୁଡ଼ିକ ନିର୍ଦ୍ଦିଷ୍ଟ ଐତିହାସିକ ପରିବେଶରେ କିପରି ବିକାଶଲାଭ କରନ୍ତି, ତାର ଆଭ୍ୟନ୍ତରୀଣ କାରଣଗୁଡ଼ିକ ପ୍ରତି ଏବଂ ସାମାଜିକ କର୍ମାଚରଣର ପ୍ରୟୋଜନୀୟତା ପ୍ରତି ଯଥାର୍ଥ ମନଯୋଗ ପୂର୍ବକ ସେହି ପ୍ରକ୍ରିୟା ଓ ପ୍ରପଞ୍ଚଗୁଡ଼ିକର ସମ୍ୟକ ତଥା ବସ୍ତୁନିଷ୍ଠ ବିଶ୍ଳେଷଣ କଲେ ଆମେ ସେଗୁଡ଼ିକର ନିର୍ଯ୍ୟାସକୁ ହୃଦୟଙ୍ଗମ କରିବାରେ ଓ ସେଗୁଡ଼ିକର ମୌଳିକ ଉପାଦାନଗୁଡ଼ିକୁ ଚିହ୍ନଟ କରିବାରେ ସମର୍ଥ ହେବା ।

ରାଜନୈତିକ, ଅର୍ଥନୈତିକ ହେଉ ବା ସାଂସ୍କୃତିକ, ଶିକ୍ଷାଗତ ହେଉ, ସବୁ କାର୍ଯ୍ୟର ସାଫଲ୍ୟ ପାଇଁ ସାମାଜିକ ବିକାଶର ପ୍ରତ୍ୟେକ ସୋପାନରେ ମୌଳିକ ଯୋଗସୂତ୍ର ଓ ମୌଳିକ କର୍ତ୍ତବ୍ୟଗୁଡ଼ିକୁ ନିରୂପଣ କରିପାରିବାର ସାମର୍ଥ୍ୟ ଅପରିହାର୍ଯ୍ୟ ଅଟେ । ଲେନିନ ଲେଖିଥିଲେ : "ମୋଟାମୋଟି ଜଣେ ବିପ୍ଳବୀ ବା ସମାଜବାଦର ଅନୁଗାମୀ ବା କମ୍ୟୁନିଷ୍ଟ ହୋଇଯିବା ଯଥେଷ୍ଟ ନୁହେଁ । ପ୍ରତ୍ୟେକଟି ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ତୁମକୁ ଜଞ୍ଜିରର ନିର୍ଦ୍ଦିଷ୍ଟ କଡ଼ିଟିକୁ ଧରିପାରିବାର ସାମର୍ଥ୍ୟ ହାସଲ କରିବାକୁ ହେବ । ତାକୁ ସମସ୍ତ ଶକ୍ତି ଦେଇ ଜାବୁଡ଼ି ଧରିବାକୁ ହେବ, ତାହାହେଲେ ତୁମେ ପୂରା ଜଞ୍ଜିରଟିକୁ ଧରିପାରିବ ଓ ପରବର୍ତ୍ତୀ କଡ଼ି ଧରିବା ପାଇଁ ସଫଳତାରେ ପ୍ରସ୍ତୁତ ହୋଇପାରିବ ।" (ଭି ଆଇ ଲେନିନ, ରଚନାବଳୀ, ୨୭ଶ ଖଣ୍ଡ, ପୃ : ୨୭୪) ।

ପ୍ରଧାନ କଡ଼ି ବା ଯୋଗସୂତ୍ରଟିକୁ ସନ୍ଧାନ କରିବା ସହଜ କଥା ନୁହେଁ । ସମାଜ ଏକ ଅତି ଜଟିଳ ଓ ନିୟତ ବିକାଶଶୀଳ ବ୍ୟବସ୍ଥା । ତହିଁରେ ଅନେକ ବସ୍ତୁନିଷ୍ଠ ଓ ଭାବମୟ ଉପାଦାନ ପରସ୍ପର ଭିତରେ କ୍ରିୟା-ପ୍ରତିକ୍ରିୟାରେ ରତ ।

ଏଣୁ ଜନତାର ଗଣତନ୍ତ୍ର, ସମାଜବାଦ ଓ ସାମ୍ୟବାଦ ପାଇଁ ଲଢ଼େଇ କଲାବେଳେ ତାର ଭିନ୍ନ ଭିନ୍ନ ସୋପାନରେ ମୁଖ୍ୟ କର୍ତ୍ତବ୍ୟଗୁଡ଼ିକୁ ଠିକ ଭାବେ ନିରୂପଣ କରିବା ପାଇଁ ଓ ଠିକ ସମୟରେ ରାଜନୈତିକ ଜୀବନ ତଥା ଅର୍ଥନୈତିକ ଓ ସାଂସ୍କୃତିକ ବିକାଶର ସମସ୍ୟାଗୁଡ଼ିକୁ ସମାଧାନ କରିବାରେ ମୌଳିକ ଯୋଗସୂତ୍ରଟିକୁ ନିର୍ଣ୍ଣୟ କରିବା ପାଇଁ ମାର୍କସବାଦ-ଲେନିନବାଦର ମୂଳ ନୀତିଗୁଡ଼ିକର ସୃଜନାତ୍ମକ ପ୍ରୟୋଗ ହିଁ ଆମକୁ ସମର୍ଥ କରିଥାଏ ।

କେବଳ ଏକ ଶ୍ରେଣୀ ଆଭିମୁଖ୍ୟ, ଏକ ସୁପକ୍ଷାଶ୍ରୟୀ ମନୋଭାବର ଭିତ୍ତି ଉପରେ ହିଁ ସାମାଜିକ ଜୀବନର ପ୍ରକ୍ରିୟା ଏବଂ ପ୍ରପଞ୍ଚଗୁଡ଼ିକର ବୈଜ୍ଞାନିକ ବିଶ୍ଳେ-ଷଣ ତଥା କଳନା ଏବଂ ବାସ୍ତବ କର୍ମକାଣ୍ଡଗତ ଶ୍ରେୟପ୍ରବଣତାଗୁଡ଼ିକର ନିର୍ଦ୍ଧା-ରଣ ସମ୍ଭବ ଅଟେ ।

## (ଗ) ବାସ୍ତବତା ପ୍ରତି ଏକ ଶ୍ରେଣୀ ଆଭିମୁଖ୍ୟ

ମାର୍କସବାଦ-ଲେନିନବାଦର ତତ୍ତ୍ୱ ଓ ବୈପ୍ଳବିକ ସଂଗ୍ରାମର ବାସ୍ତବ କର୍ମକାଣ୍ଡରେ ଅନ୍ତର୍ନିହିତ ରହିଛି ଏକ ସ୍ୱପକ୍ଷାଶ୍ରୟୀ, ଶ୍ରେଣୀ ଆଭିମୁଖ୍ୟ । ଗୋଟିଏ ଶ୍ରେଣୀର ମତବାଦ, ତା'ର ସ୍ୱାର୍ଥ ଏବଂ ସେ ସ୍ୱାର୍ଥକୁ ଉନ୍ନୀତ କରିବା ପାଇଁ ନିରବଚ୍ଛିନ୍ନ ଦୃଢ଼ପ୍ରୟାସ ରୂପରେ ହିଁ ସ୍ୱପକ୍ଷାଶ୍ରୟୀ ବା ଶ୍ରେଣୀ ଆଭିମୁଖ୍ୟ ସାଧାରଣତଃ ପ୍ରକାଶ ପାଇଥାଏ । ଏକ ଶ୍ରେଣୀ ବିଭକ୍ତ ସମାଜରେ ଏଭଳି ଜଣେ ବ୍ୟକ୍ତି ନାହିଁ ଯେ କି କୌଣସି ନା କୌଣସି ଶ୍ରେଣୀ ବା ସାମାଜିକ ଜନଗୋଷ୍ଠୀ ସହିତ ସମ୍ପୃକ୍ତ ନୁହେଁ । ଗୋଟିଏ ସମାଜରେ ରହିଥିବା ସାମାଜିକ ସମ୍ପର୍କର ପରିସର ବାହାରେ କୌଣସି ଲୋକ ରହିନାହାନ୍ତି କି ରହିପାରିବେ ନାହିଁ । ସମାଜରେ ଯେତେବେଳେ ଶ୍ରେଣୀକାରିତା ହେଉଛି ଶ୍ରେଣୀ ସଂଗ୍ରାମ, ଯେତେବେଳେ କୌଣସି ଲୋକ କୌଣସି ନା କୌଣସି ଶ୍ରେଣୀର ପକ୍ଷ ନେବାକୁ ବାଧ୍ୟ (ଶ୍ରେଣୀମାନଙ୍କ ଭିତରେ ଥିବା ସମ୍ପର୍କକୁ ସେ ଥରେ ବୁଝିଗଲେ); ସେହି ଶ୍ରେଣୀର ବିଜୟରେ ଆନନ୍ଦିତ ଓ ପରାଜୟରେ ଦୁଃଖିତ ହେବାକୁ ବାଧ୍ୟ । ତାଙ୍କ ଶ୍ରେଣୀର ଶତ୍ରୁତା ଆଚରଣ କରୁଥିବା, ତାଙ୍କ ଶ୍ରେଣୀର ବିକାଶକୁ ବାଧା ଦେଉଥିବା ଲୋକମାନଙ୍କ ପ୍ରତି ସେ ରୁଷ୍ଟ ହେବାକୁ ବାଧ୍ୟ ।

ଲୋକ ବା ଶ୍ରେଣୀ ରାଜନୈତିକଭାବେ ଯେତେ ଉନ୍ନତ ଓ ଶିକ୍ଷିତ ହୋଇଥିବ ତା'ର ସ୍ୱପକ୍ଷାଶ୍ରୟିତାର ମାତ୍ରା ସେତେ ବେଶି ହେବ । ଏହି ସ୍ୱପକ୍ଷାଶ୍ରୟିତା ଶ୍ରେଣୀ ସମ୍ପର୍କର ବିକାଶ, ଲୋକଙ୍କ ଦ୍ୱାରା ଏ ସମ୍ପର୍କର ଉପଲବ୍ଧି, ଶ୍ରେଣୀର ପ୍ରତିନିଧିମାନଙ୍କ ପକ୍ଷରୁ ରାଜନୈତିକ ମତବାଦର ପ୍ରଚାର ଓ ସେ

ମତବାଦକୁ ବଜାୟ ରଖିବାର ବ୍ୟଗ୍ରତା ଫଳରେ ଅାବର୍ଭାବ ହୋଇଥାଏ ବୋଲି ଲେନିନ ମତ ଦେଇଛନ୍ତି । ଅତଏବ ସ୍ୱପକ୍ଷାଶ୍ରୟିତା ହେଉଛି ଏକାଧାରରେ ରାଜନୈତିକ ବିକାଶ ପାଇଁ ଏକ ଆବଶ୍ୟକତା ଓ ଏକ ସୂଚକ ।

ସ୍ୱପକ୍ଷାଶ୍ରୟିତାର ମନ୍ତ୍ରରେ ଯେ ଆପ୍ଳୁତ ସେ ପ୍ରଚଳିତ ଘଟଣାବଳୀକୁ ଓ ସାମାଜିକ ଜୀବନର ପ୍ରକ୍ରିୟା ତଥା ପ୍ରପଞ୍ଚଗୁଡ଼ିକୁ ନିଜ ଶ୍ରେଣୀର ଦୃଷ୍ଟିକୋଣରୁ ବିଗ୍ଭର କରିବା ଓ କଳନା କରିବାକୁ ସମର୍ଥ । ଗୋଟିଏ ସାମାଜିକ ପ୍ରପଞ୍ଚ ବା ଘଟଣାର ସଠିକ ଉପାଦାନ ବାହାର କରିବାକୁ ଶ୍ରେଣୀ ଦୃଷ୍ଟିକୋଣ ଅପରିହାର୍ଯ୍ୟ । ଯେତେଦିନ ଯାଏ ଲୋକେ ଯାବତୀୟ ନୈତିକ, ଧାର୍ମିକ ଓ ରାଜନୈତିକ ତଥା ସାମାଜିକ ବୋଲି, ଘୋଷଣା ଓ ପ୍ରତିଶ୍ରୁତି ପଛରେ ରହିଥିବା କୌଣସି ନା କୌଣସି ଶ୍ରେଣୀର ସ୍ୱାର୍ଥକୁ ଦେଖିପାରନ୍ତି ନାହିଁ ସେତେ ଦିନ ଯାଏ ସେମାନେ ରାଜନୀତିରେ ପ୍ରତାରଣା ଓ ଆତ୍ମପ୍ରବଞ୍ଚନାର ଶିକାର ହୁଅନ୍ତି । (ଭି ଆଇ ଲେନିନ, ରଚନାବଳୀ, ୧୯ଶ ଖଣ୍ଡ, ପୃ ୨୮ ଦ୍ରଷ୍ଟବ୍ୟ) । ଗୋଟିଏ ବିଗ୍ଭରାଧୀନ ସାମାଜିକ ପ୍ରପଞ୍ଚଦ୍ୱାରା କେଉଁ ଶ୍ରେଣୀର ସ୍ୱାର୍ଥ ସବୁଠାରୁ ବେଶି ସାବ୍ୟସ୍ତ ହେଉଛି ତାହା କହିଦେବା ସହଜ ନୁହେଁ । କିନ୍ତୁ ସାମାଜିକ ପ୍ରପଞ୍ଚ ଓ ଘଟଣାବଳୀର ବାସ୍ତବ କଳନା କରିବା ଜଟିଳ ବ୍ୟାପାର ବୋଲି ଉଲ୍ଲେଖ କରି ଲେନିନ ଲେଖିଥିଲେ : "ଯେତେବେଳେ ନିର୍ଦ୍ଦିଷ୍ଟ ପ୍ରସ୍ତାବଗୁଡ଼ିକୁ କେଉଁ ରାଜନୈତିକ ବା ସାମାଜିକ ଗୋଷ୍ଠୀ ବା ଶକ୍ତିବର୍ଗ ବା ମେଣ୍ଟ ଉପସ୍ଥାପିତ କରୁଛନ୍ତି ତାହା ତତ୍‌କ୍ଷଣାତ୍ ଜାଣି ନହେବ ସେତେବେଳେ ପଗ୍ଭରିବାକୁ ହେବ : ଏଥିରେ କାହାର ଲାଭ ହେବ ?"

"କିଏ ଗୋଟିଏ ଦୃଷ୍ଟିଭଙ୍ଗୀକୁ ପ୍ରତ୍ୟକ୍ଷରେ ଉପସ୍ଥାପିତ କରୁଛି ତାହା ରାଜନୀତିରେ ବଡ଼ କଥା ନୁହେଁ । ଏହି ଦୃଷ୍ଟିଭଙ୍ଗୀ, ପ୍ରସ୍ତାବ ଓ ପଦକ୍ଷେପରୁ କିଏ ଲାଭବାନ ହେବ ତାହାହିଁ ବଡ଼ କଥା ।

"ଲୋକ ଅଉଡ଼େଇବାରେ ବିଶ୍ୱାସ ସ୍ଥାପନ କରନ୍ତୁ ନାହିଁ । କିଏ ଲାଭବାନ ହେବ। ତାହା ଦେଖିବା ସମୀଚୀନ ।" (ଭିଆଇ ଲେନିନ, ରଚନା-ବଳୀ, ୧୯ଶ ଖଣ୍ଡ, ପୃ : ୫୩) ।

ଗୋଟିଏ ପ୍ରକ୍ରିୟା ବା ପ୍ରପଞ୍ଚର ଶ୍ରେଣୀ ଚରିତ୍ର ଉଦଘାଟିତ କରିବାରେ ସହାୟକ ହେବା ଭଳି ଯୁକ୍ତିଯୁକ୍ତ ପ୍ରଶ୍ନଟି ଆମକୁ ସେଗୁଡ଼ିକର ପ୍ରକୃତ ନିର୍ଯ୍ୟାସ ହୃଦୟଙ୍ଗମ କରିବାକୁ ସମର୍ଥ କରିଥାଏ ।

ଯେଉଁ ସ୍ୱପକ୍ଷାଶ୍ରୟିତା ମନ୍ତ୍ରକୁ ଧରି ମାର୍କସ ଓ ଏଙ୍ଗେଲସ ସେମାନଙ୍କ ବୈଜ୍ଞାନିକ ତତ୍ତ୍ୱ ରଚନା କରିଥିଲେ ତାହା ପରବର୍ତ୍ତୀ କାଳରେ ଜନଗଣଙ୍କ

ବୈପ୍ଲବିକ ସଂଗ୍ରାମର ପ୍ରତ୍ୟେକ ସ୍ତରରେ ବିକାଶଲାଭ କରି ଆସିଛି । ଦୃଷ୍ଟିକୋଣ ତତ୍ତ୍ୱ, ରାଜନୀତି, ଓ ବାସ୍ତବ କର୍ମାଚରଣ ଆଦି ସବୁଥିରେ ଅଟଳ ସର୍ବହରା ପକ୍ଷ ସମର୍ଥନ ସେମାନଙ୍କ ବୈଜ୍ଞାନିକ ଚରିତ୍ରର ମାନଦଣ୍ଡ ବୋଲି ଲେନିନ ବିବେଚନା କରୁଥିଲେ । ପାର୍ଟି ସଭ୍ୟମାନଙ୍କ ଶିକ୍ଷାକୁ ଏହି ମନ୍ତ୍ର ଢଙ୍ଗରେ ମୁହାଁଇ ଲେନିନ ବରାବର ବୁର୍ଜୁଆ ଶ୍ରେଣୀର ନିରପେକ୍ଷତା ଓ ଶ୍ରେଣୀହୀନତା ଆଦି ସ୍ଲୋଗାନକୁ ଭର୍ତ୍ସନା କରୁଥିଲେ । ଏ ସ୍ଲୋଗାନ ଶ୍ରମଜୀବୀମାନଙ୍କୁ ବିଭ୍ରାନ୍ତ କରିବା ପାଇଁ ଏବଂ ନିଜର ସ୍ୱପକ୍ଷାନୁରକ୍ତିକୁ ଢାଙ୍କିବା ପାଇଁ ହିଁ ଉଦ୍ଦିଷ୍ଟ ବୋଲି ସେ କହୁଥିଲେ । ସେ ଲେଖିଥିଲେ : "ବୁର୍ଜୁଆ ସମାଜର ଅଣପାର୍ଟି ନୀତି ହେଉଛି ମଧ୍ୟଜରେ ଥିବା ଶାସକ ଓ ଶୋଷକମାନଙ୍କର ପାର୍ଟି ପ୍ରତି ଅନୁରକ୍ତିର ଏକ ପ୍ରତାରଣାପୂର୍ଣ୍ଣ, ଛଦ୍ମ ପରିପ୍ରକାଶ ।" (ଭି.ଆଇ ଲେନିନ, ରଚନାବଳୀ, ୧୦ମ ଖଣ୍ଡ, ପୃ : ୭୯ )। ଏହି ସ୍ଲୋଗାନଗୁଡ଼ିକର ପ୍ରଚାର "କେବଳ ଗୋଟିଏ ଢାଙ୍କୁଣୀ; ଏହା ଶ୍ରମିକ-ମାନଙ୍କୁ ବୁର୍ଜୁଆ ଭାବାଦର୍ଶ ଓ ବୁର୍ଜୁଆ ରାଜନୀତି ପାଖରେ ଅଧସ୍ତନ କରି ରଖିବା ଉଦ୍ଦେଶ୍ୟରେ ଏକ ବିଶେଷ ଅନିଷ୍ଟକର ଉପାୟ ।" (ଭିଆଇ ଲେନିନ, ରଚନା-ବଳୀ, ୧୨ଶ ଖଣ୍ଡ, ପୃ : ୩୧୯) ।

ପକ୍ଷଭୁକ୍ତ ନଥିବା, ନିରପେକ୍ଷ ରହିବା ଆଦି ବୁର୍ଜୁଆ ଧାରଣା ଓ ସ୍ଲୋଗାନ ଯେ କେତେ ଅସଙ୍ଗତ ତାହା ସମାଜର ବାସ୍ତବ କର୍ମ ଜଗତରୁ ପ୍ରମାଣିତ ହୁଏ । ଐତିହାସିକ ଅଭିଜ୍ଞତାରୁ ଦେଖାଯାଇଛି ସେଗୁଡ଼ିକ ଯେଉଁ ଆକାରରେ ଆତ୍ମପ୍ରକାଶ କରନ୍ତୁ ନା କାହିଁକି ପରିଶେଷରେ ସେଗୁଡ଼ିକର ଅସଲ ରୂପ ହେଲା ଶ୍ରମଜୀବୀମାନଙ୍କ ଶତ୍ରୁର ପୃଷ୍ଠପୋଷକତା । ସର୍ବହରା ସ୍ୱପକ୍ଷାଶ୍ରୟିତା, ଶ୍ରେଣୀ ଅନୁରକ୍ତ ଆଦିକୁ ଆଡ଼େଇ ଦେବାର ବା ସାମାଜିକ ପ୍ରକ୍ରିୟାଗୁଡ଼ିକୁ ପରୀକ୍ଷା କରିବାରେ ନିରପେକ୍ଷ ହେବାର ଯେ କୌଣସି ଉଦ୍ୟମ ବାସ୍ତବତାକୁ ବିକୃତ କରି ଦେଖାଇବାରେ ପର୍ଯ୍ୟବସିତ ହେବା ଅବଶ୍ୟମ୍ଭାବୀ; ପୁଞ୍ଜିପତିମାନଙ୍କୁ ସାହାଯ୍ୟ କରିବା, ଶ୍ରମଜୀବୀମାନଙ୍କ ଶ୍ରେଣୀ ସଚେତନତାକୁ ଖର୍ବ କରିବା ଓ ସେମାନଙ୍କ ବୈପ୍ଲବିକ ଲଢ଼ୁଆ ପଣିଆକୁ ବିନଷ୍ଟ କରିବାରେ ହିଁ ପର୍ଯ୍ୟବସିତ ହେବା ଅବଶ୍ୟମ୍ଭାବୀ ।

ପୁଞ୍ଜିବାଦୀ ତତ୍ତ୍ୱଜ୍ଞ ଓ ରାଜନୀତିଜ୍ଞମାନେ ଅପକ୍ଷପାତିତା, ନିରପେକ୍ଷତା ଓ ଶ୍ରେଣୀହୀନତା ଆଦି ଧାରଣା ପ୍ରଚାର କରି ଶ୍ରମଜୀବୀମାନଙ୍କୁ ଶିଥିଳ ଓ ନିଷ୍କ୍ରିୟ କରିଦେବାକୁ ଉଦ୍ୟମ କରନ୍ତି; ସେମାନଙ୍କୁ ଶ୍ରମିକଶ୍ରେଣୀ ଆନ୍ଦୋଳନ ଓ ଶ୍ରେଣୀ ସଂଗ୍ରାମଠାରୁ ଦୂରକୁ ନେଇ ଯିବାପାଇଁ ଉଦ୍ୟମ କରନ୍ତି । ଲେନିନ କହିଛନ୍ତି : "ସଂଗ୍ରାମ ପ୍ରତି ଉଦାସୀନତା ଅର୍ଥ କେବେ ହେଲେ ନୁହେଁ ସଂଗ୍ରାମଠାରୁ ଦୂରେଇ ରହିବା; ସେଥିରେ ଅଂଶଗ୍ରହଣ ନକରିବା ବା ନିରପେକ୍ଷ ରହିବା ।"

(ଭି. ଆଇ. ଲେନିନ, ରଚନାବଳୀ, ୧୦ମ ଖଣ୍ଡ, ପୃ : ୮୧) । ରାଜନୈତିକ ନିଷ୍ଠାପରତା ଓ ଆନ୍ତରିକତା, କୌଣସି ମତାଦର୍ଶ ପ୍ରତି ଅନୁରକ୍ତିର ଅଭାବ ଥିଲେ ପରିବର୍ତ୍ତନକାମୀମାନଙ୍କର ଶିକାର ହୋଇଯିବାହିଁ ସାର ହୋଇଥାଏ, କାରଣ ଜନଗଣ ସଚେତନ ଓ ସଙ୍ଗଠିତ ନହେଲେ ଉନ୍ନତ ଦିଗରେ ପରିବର୍ତ୍ତନ କେବେ ହୋଇ ପାରିବ ନାହିଁ । ଏହି କାରଣରୁ ଜନସାଧାରଣଙ୍କର ରାଜନୈତିକ ଓ ଭାବାଦର୍ଶଗତ ଶିକ୍ଷା ଏତେ ଗୁରୁତ୍ୱପୂର୍ଣ୍ଣ, ପୁଞ୍ଜିବାଦୀ ଭାବାଦର୍ଶ ବିରୁଦ୍ଧରେ ମାର୍କସ-ବାଦ-ଲେନିନବାଦର ଆଘାତ ଏତେ ଗୁରୁତ୍ୱପୂର୍ଣ୍ଣ । ଲେନିନ୍ ଯେଉଁ ଚେତାବନୀ ଦେଇଯାଇଛନ୍ତି ଯେ "ସମାଜବାଦୀ ଭାବାଦର୍ଶକୁ କୌଣସି ପ୍ରକାରେ ନ୍ୟୂନ କରିବା, ଏଥିରୁ ଠିକ୍ ସାମାନ୍ୟ ପରିମାଣରେ ବିମୁଖ ହେବା ଅର୍ଥ ହେଉଛି ବୁର୍ଜୁଆ ଭାବାଦର୍ଶକୁ ଦୃଢ଼ୀଭୂତ କରିବା"— ତାକୁ ଭୁଲିଗଲେ ଚଳିବ ନାହିଁ । (ଭି. ଆଇ. ଲେନିନ, ରଚନାବଳୀ, ୫ମ ଖଣ୍ଡ, ପୃ : ୩୮୪) ।

ପ୍ରଚଳିତ ପ୍ରକ୍ରିୟା ଓ ଘଟଣାଗୁଡ଼ିକର କଳନା ପାଇଁ ଶ୍ରେଣୀ ଦୃଷ୍ଟିକୋଣ ଆଜିବି ତାତ୍ପର୍ଯ୍ୟପୂର୍ଣ୍ଣ । ପୂର୍ବଭଳି "ଶ୍ରେଣୀ ସଂଗ୍ରାମ ଚାଲିଛି ଏବଂ ଆମର କର୍ତ୍ତବ୍ୟ ହେଉଛି ଅନ୍ୟ ସବୁ ସ୍ୱାର୍ଥକୁ ସେ ସଂଗ୍ରାମର ଅଧୀନସ୍ଥ କରାଇବା ।" (ଭି. ଆଇ. ଲେନିନ, ରଚନାବଳୀ, ୧୩ଶ ଖଣ୍ଡ, ପୃ : ୨୧୩) । ଆଜି ମଧ୍ୟ "ମୋଟ ଉପରେ ଗଣତନ୍ତ୍ର ବୋଲି ଅମୂର୍ତ୍ତ ଚିନ୍ତାଧାରାଟିକୁ ପ୍ରତିଷ୍ଠିତ କରିବା ପାଇଁ ଶ୍ରେଣୀ ଅବଧାରଣା ଓ ଶ୍ରେଣୀ ମାନଦଣ୍ଡକୁ ଅବହେଳା କରିବାର ଯେଉଁ ଯାହା ଉଦ୍ୟମ ହେଉଛି ସେଥିପ୍ରତି ବିପ୍ଳବୀମାନେ ସର୍ବୋଚ୍ଚ ମାତ୍ରାରେ ଆପୋଷହୀନ ହେବା ଆବଶ୍ୟକ । ସଂହତିର ସ୍ୱପକ୍ଷାନୁରକ୍ତିକରଣନୀତି ଶ୍ରମିକ ଓ ସକଳ ଶ୍ରମଜୀବୀ ଜନସାଧାରଣଙ୍କର ଶ୍ରେଣୀ ସଚେତନତାର ବିକାଶ ପାଇଁ ତଥା ସେମାନ-ଙ୍କର ସମାଜବାଦୀ ଚିନ୍ତାଧାରାକୁ ସ୍ପଷ୍ଟ କରିଦେବା ପାଇଁ ଆହ୍ୱାନ କରେ । ଏହା ସକଳ ପରିସ୍ଥିତିରେ ଓ ସମସ୍ତ ଅବସ୍ଥାରେ ପାର୍ଟିନୀତି ଅନୁସରଣ କରିବା ଲାଗି ଆମକୁ ପ୍ରବୋଧିତ କରେ । ଲେନିନ୍ ଏ ବିଷୟରେ ଲେଖିଛନ୍ତି : "ପାର୍ଟି ନୀତି ଯେପରି କେବଳ କଥାରେ ନରହି କାର୍ଯ୍ୟରେ ପାଳିତ ହୁଏ ତାହା ଦେଖିବା ନିମନ୍ତେ ଆମକୁ ସମସ୍ତ ସଜାଗତା ଓ ଶକ୍ତି ସାମର୍ଥ୍ୟ ସର୍ବୋଚ୍ଚ ମାତ୍ରାରେ ବିନିଯୋଗ କରିବାକୁ ହେବ ।" ( ଭି. ଆଇ. ଲେନିନ, ରଚନାବଳୀ ୧୭ଶ ଖଣ୍ଡ' ପୃ : ୬୩) ।

ପାର୍ଟି ନୀତିକୁ କାର୍ଯ୍ୟରେ ଲଗାଇବା ଓ ଜୀବନର ସକଳ କ୍ଷେତ୍ରରେ ଅନୁସରଣ କରିବା ଦିଗରେ ଶ୍ରମଜୀବୀ ଜନସାଧାରଣଙ୍କର ସାମର୍ଥ୍ୟ ହିଁ ଜନତାର ଗଣତନ୍ତ୍ର, ସମାଜବାଦ ଓ ସାମ୍ୟବାଦ ପାଇଁ ଚାଲିଥିବା ସଂଗ୍ରାମରେ ସାଫଲ୍ୟ ହାସଲ କରିବାର ଚାବିକାଠି । ଏ ସଂଗ୍ରାମରେ ନିର୍ଦ୍ଦିଷ୍ଟ ଭାବେ ପ୍ରୟୋଜନ ଉଚ୍ଚଦରର

ରାଜନୈତିକ ସଜାଗତା, ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ ସଜୋର ଉଦ୍ୟମ ଏବଂ ମତାଦର୍ଶଗତ ଅନ୍ତର୍ଘାତ ଉପରେ ପ୍ରଚଣ୍ଡ ପ୍ରତ୍ୟାଘାତ ।

ପୃଥିବୀରେ ଏବେ ମଧ୍ୟ ଅନେକ ଶକ୍ତି ଅଛନ୍ତି ଯେଉଁମାନେକ ମତାଦର୍ଶଗତ ନିଷିଦ୍ଧ ପଣ୍ୟ କାରବାରରେ ନାନା ଭାବେ ନିଯୁକ୍ତ ରହିଛନ୍ତି । ପ୍ରତିକ୍ରିୟା ଓ ସାମ୍ରାଜ୍ୟବାଦର ଶକ୍ତିବର୍ଗ ଏବେ ମଧ୍ୟ ପ୍ରଗତି, ଗଣତନ୍ତ୍ର ଓ ସମାଜବାଦର ଶତ୍ରୁବର୍ଗଙ୍କ ବିରୁଦ୍ଧରେ ଯୁଦ୍ଧରୁ ନିବୃତ୍ତ ହୋଇ ନାହାନ୍ତି । ସେମାନେ କେବଳ ଆଉଟିକିଏ ସୂକ୍ଷ୍ମ ଓ ନମନୀୟ ରୂପର ଆକ୍ରମଣ ଚଳାଉଛନ୍ତି ।

ସାମ୍ରାଜ୍ୟବାଦୀ ଚକ୍ରାନ୍ତକାରୀମାନେ ଗୋଟିଏ ସମାଜବାଦୀ ଦେଶକୁ ଆଉ ଗୋଟିଏ ସମାଜବାଦୀ ଦେଶ ସହିତ ଲଢ଼ାଇ ଦେବାକୁ ପ୍ରୟାସ କରୁଛନ୍ତି । ପୁଣି ସମାଜବାଦୀ ଦେଶମାନଙ୍କୁ ଉନ୍ନୟନଶୀଳ ଦେଶମାନଙ୍କ ବିରୁଦ୍ଧରେ ଓ ଉନ୍ନୟନଶୀଳ ଦେଶମାନଙ୍କୁ ସମାଜବାଦୀ ଦେଶମାନଙ୍କ ବିରୁଦ୍ଧରେ ଲଗାଇବାକୁ ମଧ୍ୟ ବାଟ ଖୋଜୁଛନ୍ତି । ସମାଜବାଦୀ ଦେଶମାନଙ୍କରେ ମାନବିକ ଅଧିକାରକୁ ଲଙ୍ଘନ କରାଯାଉଛି ବୋଲି ସେମାନେ ଚହଲ ପକାଉଛନ୍ତି କାରଣ ତଦ୍ୱାରା ସେମାନେ ପୁଞ୍ଜିବାଦୀ ଦେଶମାନଙ୍କରେ ସକଳ କ୍ଷେତ୍ରରେ ପ୍ରତିକ୍ରିୟାଶୀଳ ଶକ୍ତିବର୍ଗଙ୍କ ସର୍ବସ୍ୱତାର ପ୍ରାଚୁର୍ଯ୍ୟକୁ ଘୋଡ଼ାଇ ରଖିବାର ଉଦ୍ୟମ କରୁଛନ୍ତି । ସମାଜବାଦୀ ଦେଶମାନେ ଓ ଜାତୀୟ ତଥା ସାମାଜିକ ମୁକ୍ତି ଲାଗି ଲଢ଼ୁଥିବା ଜନଗଣ ଆତଙ୍କରାଜ ସୃଷ୍ଟି କରୁଛନ୍ତି ବୋଲି ସେମାନେ ଅଭିଯୋଗ କରୁଛନ୍ତି, ଅଥଚ ପୁଞ୍ଜିବାଦୀ ଦେଶମାନଙ୍କରେ ଆତଙ୍କରାଜ ଯେ ସରକାରୀ ନୀତି ପଦରେ ଅଭିଷିକ୍ତ ହେଉଛି ସେକଥା ଭ୍ରମରେ ଧରୁନାହାନ୍ତି । ସମାଜବାଦୀ ଦେଶ ଓ ସମାଜବାଦୀ ଆଭିମୁଖ୍ୟ ଗ୍ରହଣ କରିଥିବା ଦେଶମାନଙ୍କର କେତେକ ଅସମାହିତ ସମସ୍ୟା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ସେମାନେ ଅଭିବୃଦ୍ଧି ସହିତ ଜଡ଼ିତ ସ୍ୱାଭାବିକ ସମସ୍ୟାଗୁଡ଼ିକୁ ଅତିରଂଜିତ କରି ଦେଖାଉଛନ୍ତି ଓ ସେହିସବୁ ଦେଶମାନଙ୍କର ଆଭ୍ୟନ୍ତରୀଣ ତଥା ବୈଦେଶିକ ନୀତି ଭୁଲ ବୋଲି ପ୍ରଚାର କରୁଛନ୍ତି । ଉକ୍ତ ଦେଶମାନଙ୍କର ଜନସାଧାରଣଙ୍କ ମଧ୍ୟରୁ କେତେକ ଗୋଷ୍ଠୀ ମଧ୍ୟରେ ଦେଖା ଦେଉଥିବା ଅରାଜନୈତିକ ମତଗତ ଓ ଶ୍ରେଣୀ ସଚେତନତାର ଅଭାବର ସୁଯୋଗ ନେଇ ଏବଂ କେତେକଙ୍କର ପେଟିବୁର୍ଜୁଆ ଦୃଷ୍ଟିକୋଣ ଓ ବ୍ୟକ୍ତିସ୍ୱାତନ୍ତ୍ର୍ୟବାଦକୁ ଫାଇଦା ଉଠାଇ ସେମାନେ ସମାଜବାଦକୁ କ୍ଷୁର୍ଣ୍ଣ କରିବାର ଅପଚେଷ୍ଟା ଚଳାଇଛନ୍ତି ।

ଶ୍ରମଜୀବୀ ଜନସାଧାରଣ ସମାଜର ବୈପ୍ଳବିକ ରୂପାନ୍ତର ପଥରେ ଘଟୁଥିବା ଘଟଣାବଳୀର କଳନା କରିବା ପାଇଁ ଏକ ଶ୍ରେଣୀ ଦୃଷ୍ଟିଭଙ୍ଗୀ ଗ୍ରହଣ କରି ସେମାନଙ୍କର ଶତ୍ରୁମାନଙ୍କ ଦ୍ୱାରା ହେଉଥିବା ଏତାଦୃଶ ଭାବାଦର୍ଶଗତ ଅନ୍ତର୍ଘାତ ଓ ଚକ୍ରାନ୍ତକୁ ପରାସ୍ତ କରି ପାରିବେ ।

## (୪) ସୃଜନଶୀଳତା

ନୂତନ ସମାଜ ଗଠନ କରିବାର ଦୈନନ୍ଦିନ କର୍ମ ପଥରେ ନିରନ୍ତର ସମସ୍ୟାମାନ ସୃଷ୍ଟି ହୁଏ ଯେଉଁଗୁଡ଼ିକୁ ସମାଧାନ କରିବାପାଇଁ ଧାମାଧରା ଦୃଷ୍ଟିଭଙ୍ଗୀ ପ୍ରୟୋଜନ ନୁହେଁ, ପ୍ରୟୋଜନ ସୃଜନଶୀଳ ଦୃଷ୍ଟିଭଙ୍ଗୀ । ଲିଓନିଦ୍ ବ୍ରେଜନେଭ ସୋଭିଏତ ୟୁନିଅନ କମ୍ୟୁନିଷ୍ଟ ପାର୍ଟିର ୨୬ ତମ କଂଗ୍ରେସରେ କହିଥିଲେ : "ଆମ ଜୀବନର ଦେଖା ଦେଇଥିବା ସମସ୍ୟାମାନଙ୍କର ତାଡ଼ନା ହେଉଛି ତତ୍ତ୍ୱ ଉପସ୍ଥାପନା କରିବା, ଅର୍ଥନୀତି ବିଜ୍ଞାନର ଉପସ୍ଥାପନା କରିବା ଏବଂ ଏ ସବୁକୁ ଅର୍ଥନୈତିକ କର୍ମାଚରଣରେ ନିକଟବର୍ତ୍ତୀ କରାଇବା । ଆମ ସମଗ୍ର ସମାଜର ସୃଜନଶୀଳ ସମ୍ଭାବନାକୁ କାର୍ଯ୍ୟରେ ଲଗାଇବାକୁ ହେବ । ଏ କ୍ଷେତ୍ରରେ ଯାହା ଲୋଡ଼ା ତାହା ହେଉଛି ଦକ୍ଷତା ଓ ଶୃଙ୍ଖଳାକୁ ଉଦ୍‌ଯୋଗ ଓ ପ୍ରୟାସ ସହିତ ଅଙ୍ଗାଙ୍ଗୀଭାବେ ସଯୁକ୍ତ କରିପାରୁଥିବା ଧାରାରେ କାର୍ଯ୍ୟ; ମହତ ଲକ୍ଷ୍ୟ ପ୍ରତି ଅନୁରକ୍ତ ସହିତ ବ୍ୟାବହାରିକ ଓ ତଥା ବ୍ୟାପାର ବୁଦ୍ଧିସଂପନ୍ନ ମନୋଭାବ, ଦୋଷତ୍ରୁଟି ପ୍ରତି ଆତ୍ମସମାଲୋଚନାତ୍ମକ ମତଗତି; ଆମେ ଗ୍ରହଣ କରିଥିବା ପଥର ଐତିହାସିକ ଉତ୍କର୍ଷ ଉପରେ ଅତୁଟ ବିଶ୍ୱାସ ।" (ଦଲିଲ ପତ୍ର ଓ ପ୍ରସ୍ତାବାବଳୀ, ସୋଭିଏତ୍ ୟୁନିୟନ କମ୍ୟୁନିଷ୍ଟ ପାର୍ଟିର ୨୬ ତମ କଂଗ୍ରେସ, ମସ୍କୋ ୧୯୮୧, ପୃ : ୬୭) ।

ଏକ ନୂଆ ସମାଜ ଗଠନ ଉଦ୍ୟମ ସଫଳ ହେବ ଯଦି ସେଥିପାଇଁ ପ୍ରୟୋଜନୀୟ ବୃତ୍ତିରେ ସୁତାଲିମପ୍ରାପ୍ତ କର୍ମୀ ଥିବେ । "ପରିଚାଳନା ଅର୍ଥ ଅବଶ୍ୟ ନୈପୁଣ୍ୟ...... ଶେଷ ଖୁଣ୍ଟିନାଟି ବିଷୟ ସମେତ ଉତ୍ପାଦନ ପାଇଁ ଯାବତୀୟ ପ୍ରୟୋଜନ ବସ୍ତୁ ସଂପର୍କରେ ଜ୍ଞାନ ଏବଂ ତତ୍‌ସହିତ ତୁମେ ସଂଶ୍ଳିଷ୍ଟ ଥିବା ଉତ୍ପାଦନ ଶାଖାରେ ପ୍ରବର୍ତ୍ତିତ ହୋଇଥିବା ସର୍ବାଧୁନିକ ପ୍ରଯୁକ୍ତିବିଦ୍ୟା ସମ୍ପର୍କିତ ଜ୍ଞାନ ..... ତୁମର କହିବା ବୈଜ୍ଞାନିକ ତାଲିମ ଥିବା ପ୍ରୟୋଜନ ।" (ଭି ଆଇ ଲେନିନ୍, ରଚନାବଳୀ, ୩୦ଶ ଖଣ୍ଡ, ପୃ ୨୯୮) ।

ଯିଏ ସୃଜନାତ୍ମକଭାବେ ଚିନ୍ତା କରନ୍ତି ଓ କାର୍ଯ୍ୟ କରନ୍ତି ତାଙ୍କର ବୃତ୍ତିଗତ ତାଲିମକୁ ମାର୍କସବାଦୀ ଲେନିନବାଦୀ ଶିକ୍ଷାଠାରୁ ଅଲଗା କରିହେବ ନାହିଁ । ଏକ ବୈଜ୍ଞାନିକ ଜ୍ଞାନ ଭିତ୍ତିର ପଦ୍ଧତି ରୂପେ ଏବଂ ବାସ୍ତବ କର୍ମକାଣ୍ଡର ଦିଶାରୀ ରୂପେ ମାର୍କସବାଦ-ଲେନିନବାଦକୁ ପ୍ରୟୋଗ କରିବା ଦ୍ୱାରାହିଁ ଜଣେ ତାଙ୍କର ବୃତ୍ତିଗତ ଜ୍ଞାନର ଦକ୍ଷ ବିନିଯୋଗ କରି ପାରିବେ ଏବଂ ନିର୍ଦ୍ଦିଷ୍ଟ ଐତିହାସିକ ଜ୍ଞାନର ତଥା ସୁଦୂରପ୍ରସାରୀ ଲକ୍ଷ୍ୟର ସ୍ୱାର୍ଥରାଜିକୁ ବିଚାରକୁ ନେଇ ତାଙ୍କ ସମ୍ମୁଖରେ ଦେଖା ଦେଇଥିବା ସମସ୍ୟାବଳୀର ଶ୍ରେଷ୍ଠ ସମାଧାନ କରିପାରିବେ ।

ଯେଉଁ ବ୍ୟକ୍ତି ମାର୍କସବାଦ-ଲେନିନବାଦକୁ ଅନୁସୃତ କରିଛନ୍ତି ସେ ତାଙ୍କ ସମ୍ମୁଖରେ ଥିବା କର୍ତ୍ତବ୍ୟଗୁଡ଼ିକୁ ସମ୍ପାଦନ କରିବା ପାଇଁ ସହଜରେ ଏକ ସୃଜନଶୀଳ ଦୃଷ୍ଟିଭଙ୍ଗୀ ଗ୍ରହଣ କରିପାରିବେ ।

ୟୁରି ଆନ୍ଦ୍ରୋପୋଭ ତାଙ୍କ ରଚିତ ପ୍ରବନ୍ଧ କାର୍ଲ ମାର୍କସଙ୍କ ଶିକ୍ଷା ଓ ସୋଭିଏତ ୟୁନିଅନରେ ସମାଜବାଦ ନିର୍ମାଣ ସମ୍ବନ୍ଧୀୟ କେତୋଟି ପ୍ରଶ୍ନ ସେ ଲେଖିଥିଲେ : "ମାର୍କସବାଦ ଏକ ନିର୍ଜୀବ ତତ୍ତ୍ୱ ନୁହେଁ, ଏହା କର୍ମାଚରଣ ପାଇଁ ଏକ ସଜୀବ ଦିଶାରୀ । ଇତିହାସ ପ୍ରତିଥର ମୋଡ଼ ନେବାବେଳେ ଆମ ସମ୍ମୁଖରେ ଯେଉଁ ଦୁଃସାଧ୍ୟ କର୍ତ୍ତବ୍ୟ ଉପସ୍ଥାପିତ କରିଥାଏ ସେଗୁଡ଼ିକୁ ସ୍ୱାଧୀନଭାବେ ମୁକାବିଲା କରିବା ପାଇଁ ଏହା ଆମର ପଥ ପ୍ରଦର୍ଶକ । ଅତଏବ ଜୀବନ ସହିତ ତାଳ ଦେଇ ଚାଲିବାକୁ ହେଲେ କମ୍ୟୁନିଷ୍ଟମାନେ ମାର୍କସଙ୍କ ଶିକ୍ଷାକୁ ସବୁ ଦିଗରେ ଅଗ୍ରସର କରାଇ ନେବା ଓ ସମୃଦ୍ଧ କରିବା ପ୍ରୟୋଜନ ଏବଂ ମାର୍କସବାଦର ସଜୀବ ଆତ୍ମା ବୋଲି ଯଥାର୍ଥରେ ଅଭିହିତ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦକୁ ସୃଜନାତ୍ମକ ଭାବେ କାର୍ଯ୍ୟରେ ପ୍ରୟୋଗ କରିବା ପ୍ରୟୋଜନ । ଆମର ଯେଉଁ ମହାର୍ଘ ଭାବାଦର୍ଶଗତ ଐତିହ୍ୟ ରହିଛି ଏବଂ ଯେଉଁ ଐତିହ୍ୟର ମୂର୍ତ୍ତିମନ୍ତ ଦୃଷ୍ଟାନ୍ତ ହେଉଛନ୍ତି ଲେନିନ, ସେହି ଐତିହ୍ୟ ପ୍ରତି ଏଇଭଳି ଏକ ମନୋଭାବ ଦ୍ୱାରାହିଁ, ବୈପ୍ଳବିକ କର୍ମାଚରଣର ପ୍ରଭାବ ଅଧୀନରେ ତତ୍ତ୍ୱର ନିରବଚ୍ଛିନ୍ନ ସଂସ୍କାର ଦ୍ୱାରାହିଁ ମାର୍କସବାଦ ବୈପ୍ଳବିକ କର୍ମ ତତ୍ପରତାର ପ୍ରକୃତ ବିଜ୍ଞାନ ଓ କୌଶଳ ହୋଇପାରିବ । (ଓ୍ୟାଇ. ଭି. ଆନ୍ଦ୍ରୋପୋଭ. କାର୍ଲ ମାର୍କସଙ୍କ ଶିକ୍ଷା ଓ ସୋଭିଏତ ୟୁନିଅନରେ ସମାଜବାଦ ନିର୍ମାଣ ସମ୍ବନ୍ଧୀୟ କେତୋଟି ପ୍ରଶ୍ନ, ଏ. ପି. ଏନ୍ ପବ୍ଲିଶିଂ ହାଉସ, ମସ୍କୋ, ୧୯୮୩ ପୃ-୩୫) ।

ମାର୍କସବାଦ-ଲେନିନବାଦ ତତ୍ତ୍ୱର ସୃଜନାତ୍ମକ ପ୍ରୟୋଗହିଁ ଆମକୁ ସମର୍ଥ କରେ ଆମ ହାତରେ ଥିବା ପ୍ରଚ୍ଛନ୍ନ ସମ୍ବଳ ସମ୍ଭାବନାକୁ କଳନା କରିବାକୁ, ପରବର୍ତ୍ତୀ ସୋପାନର ପ୍ରାଥମିକ କାର୍ଯ୍ୟଗୁଡ଼ିକୁ ନିର୍ଦ୍ଧିଷ୍ଟ କରିବାକୁ ଏବଂ ଆଗାମୀ ବହୁ ବର୍ଷ ପାଇଁ ବିକାଶର ସମ୍ଭାବନାକୁ ଦେଖି ପାରିବାକୁ । ବାସ୍ତବତା ବିକାଶ ପାଇବାର ବାସ୍ତବ ଉତ୍ସଗୁଡ଼ିକୁ ଲୋକ ଲୋଚନକୁ ଆଣିବା ଫଳରେ ଆମେ ବିଭିନ୍ନ ପ୍ରକ୍ରିୟା ଓ ପ୍ରପଞ୍ଚଗୁଡ଼ିକର ଆତ୍ମପ୍ରକାଶକୁ ପୂର୍ବ ଦେଖି ପାରିବାକୁ ସମର୍ଥ ହେବା ।

ଜ୍ଞାନ ଲାଭ କରିବା ପାଇଁ ମାର୍କସବାଦ-ଲେନିନବାଦର ତତ୍ତ୍ୱ ଅନନ୍ତ ସୁଯୋଗ ଅର୍ପଣ କରିଥାଏ । ଏହା ଏକ ବିକାଶଶୀଳ ବିଜ୍ଞାନ ହୋଇଥିବାରୁ

ନିଜର ବର୍ଗଗୁଡ଼ିକର ସଂଗ୍ରାମରୁ ବରାବର ନୂଆ ନୂଆ ଅବଧାରଣାର ଅନ୍ତର୍ଭୁକ୍ତି ଦ୍ୱାରା ସମୃଦ୍ଧ ହୋଇଥାଏ ଏବଂ ପୂର୍ବରୁ ବିଦ୍ୟମାନ ଥିବା ଅବଧାରଣାଗୁଡ଼ିକୁ ମଧ୍ୟ ନୂଆ ନୂଆ ଉପାଦାନର ସମ୍ମିଶ୍ରଣରେ ସମୃଦ୍ଧ କରିଥାଏ । ଏଥିରେ ଶୁଦ୍ଧ ବିଜ୍ଞାନ ପାଇଁ ମୌଳିକ ଗୁରୁତ୍ୱ ବିଶିଷ୍ଟ ସିଦ୍ଧାନ୍ତମାନ ନିହିତ ରହିଛି ।

ମାର୍କସବାଦ-ଲେନିନବାଦର ତତ୍ତ୍ୱରେ ରହିଥିବା ପ୍ରକ୍ଷେପ ଓ ପ୍ରାକ୍-ସୂଚକ ସ୍ୱଭାବମୂଳକ ଗୁଣ ବିଜ୍ଞାନର ବିକାଶ ପାଇଁ ପ୍ରମୁଖ ପ୍ରବଣତାଗୁଡ଼ିକୁ ନିର୍ଣ୍ଣୟ କରିବା ସଙ୍ଗେ ସଙ୍ଗେ ପାର୍ଟି ଓ ଗଣ ସଂଗଠନଗୁଡ଼ିକ ପାଇଁ କାର୍ଯ୍ୟ କରିବାକୁ ଉଦ୍ୟତ କର୍ମୀମାନଙ୍କୁ ତାଲିମ ଦେବା ଦିଗରେ ମଧ୍ୟ ନିଷ୍ପତ୍ତିମୂଳକ ଭୂମିକା ଗ୍ରହଣ କରିଥାଏ । ମାର୍କସବାଦୀ କର୍ମୀ ତାଲିମ କରିବା ପାଇଁ ମାର୍କସବାଦ-ଲେନିନବାଦ ତତ୍ତ୍ୱର ଏହି ସ୍ୱଭାବ ମୂଳକ ଗୁଣଟିକୁ ଆୟତ୍ତ କରିବା ଏବଂ ଏହାର ଭିତ୍ତିରେ ନିଜର ଜ୍ଞାନ ସୀମାକୁ ପ୍ରସାରିତ ଓ ଗଭୀର କରିବା ଓ ଆଗରେ ଦେଖା ଦେଉଥିବା ସମସ୍ୟାଗୁଡ଼ିକୁ ସମାଧାନ କରିବା ଏକାନ୍ତ ଆବଶ୍ୟକ ଅଟେ ।

## (୪) ସୃଷ୍ଟି କରିବା ପାଇଁ ଶିକ୍ଷା ଲାଭ

ଜୀବନ ସହିତ, ଗଣତନ୍ତ୍ର ଓ ସମାଜବାଦ ପାଇଁ ଚାଲିଥିବା ସଂଗ୍ରାମ ସହିତ ନିବିଡ଼ ବନ୍ଧନ ହେଉଛି ମାର୍କସବାଦ-ଲେନିନବାଦ ତତ୍ତ୍ୱର ଅସଲ ସ୍ୱଭାବ । ଏହି ବନ୍ଧନକୁ ଲକ୍ଷ୍ୟ କରି ୟୁରି ଆନ୍ଦ୍ରୋପୋଭ ଉଲ୍ଲେଖ କରିଥିଲେ ଯେ ଆମେ ଦୁନିଆର ସାମାଜିକ ଉନ୍ନୟନ କ୍ଷେତ୍ରରେ ଅନେକ ଦୂର ଅଗ୍ରଗତି କରିପାରିଥାଇଁ । ଆଜିର ଦୁନିଆର ରାଜନୈତିକ ମାନଚିତ୍ର ସମ୍ପୂର୍ଣ୍ଣ ଭିନ୍ନ ଦେଖାଯାଉଛି । ବିଜ୍ଞାନ ଚମତ୍କାର ଆବିଷ୍କାରମାନ କରୁଛି । ପ୍ରଯୁକ୍ତିବିଦ୍ୟାର ସାଫଲ୍ୟ ବିସ୍ମୟକର । ସେଥି ସଙ୍ଗେ ସଙ୍ଗେ ମଣିଷ ଜାତି ସମ୍ମୁଖରେ ବହୁ ନୂଆ ଓ ଜଟିଳ ସମସ୍ୟା ଦେଖାଦେଉଛି । ମଣିଷ ଜାତି ଯଥାର୍ଥରେ କଞ୍ଚାମାଲ ସମସ୍ୟା, ଖାଦ୍ୟ, ପରିବେଶ ଆଦି ନାନା ବିଶ୍ୱବ୍ୟାପୀ ସମସ୍ୟାରେ ଜର୍ଜରିତ । ଜାତିମାନଙ୍କର ଆଜିର ବୃହତ୍ତମ ପ୍ରୟୋଜନୀୟତା ହେଉଛି ଶାନ୍ତିପୂର୍ଣ୍ଣ ଅବସ୍ଥାକୁ ଅତୁଟ ରଖିବା, ତାପ ପାରମାଣବିକ ଯୁଦ୍ଧର ବିପର୍ଯ୍ୟୟକୁ ପ୍ରତିରୋଧ କରିବା । "ଆମ ପାର୍ଟି ସମ୍ମୁଖରେ, ସୋଭିଏତ ସରକାରଙ୍କ ସମ୍ମୁଖରେ ଏବଂ ବିଶ୍ୱର ସକଳ ଜାତିଙ୍କ ସମ୍ମୁଖରେ ଏହାଠାରୁ ବଳି ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ଆଉ କିଛି ନାହିଁ ।

"ଆଧୁନିକ ବିଶ୍ୱର ଯାବତୀୟ ଜଟିଳତାକୁ ହୃଦୟଙ୍ଗମ କରିବା, ଶ୍ରମିକ ଶ୍ରେଣୀର ବୈପ୍ଳବିକ, ସାମାଜିକ ତଥା ଐତିହାସିକ ସୃଜନାତ୍ମକ କର୍ମତତ୍ପରତାକୁ

ସଂଗଠିତ ଓ ନିର୍ଦ୍ଦେଶିତ କରିବା— ଏହାହିଁ ହେଉଛି ସେହି ସବୁର କର୍ତ୍ତବ୍ୟ, ଯାହା ସହିତ ମାର୍କସବାଦ-ଲେନିନ୍‌ବାଦ ଏବଂ ମଣିଷ ଜାତିର ପ୍ରଗତି ଲାଗି ଆମର କାର୍ଯ୍ୟ ଆଜି ସମ୍ପୃକ୍ତ...'' (ଓ୍ୱାଇ. ଭି. ଆନ୍ଦ୍ରୋପୋଭ, କାର୍ଲମାର୍କସଙ୍କ ଶିକ୍ଷା ଓ ସୋଭିଏତ ୟୁନିୟନରେ ସମାଜବାଦ ନିର୍ମାଣ ସଂକ୍ରାନ୍ତ କେତୋଟି ପ୍ରଶ୍ନ, ନୋଭୋଷ୍ଟି ପ୍ରେସ୍ ଏଜେନ୍ସି ପବ୍ଲିସିଂ ହାଉସ୍, ମସ୍କୋ ୧୯୮୩, ପୃଷ୍ଠା ୩୫)।

ପାର୍ଟି ଓ ଜନଗଣଙ୍କ ବାସ୍ତବ କର୍ମାଚରଣ ସହ ମାର୍କସବାଦୀ-ଲେନିନବାଦୀ ବିଜ୍ଞାନର ସଂଯୋଗ ଓ ଐକ୍ୟ ହେଉଛି ପ୍ରକୃତ ବିପ୍ଳବୀମାନଙ୍କର ମୂଳନୀତି । ଏହି ମୂଳନୀତି ମାଧ୍ୟମରେ ମାର୍କସବାଦୀ-ଲେନିନ୍‌ବାଦୀ ତତ୍ତ୍ୱର ବୈଜ୍ଞାନିକ ପ୍ରବୃତ୍ତି, ଶ୍ରେଣୀମୂଳକ ପକ୍ଷାନୁରକ୍ତି ଓ ସୃଜନଶୀଳତା ଆତ୍ମପ୍ରକାଶ କରିଥାଏ ।

ତତ୍ତ୍ୱ ଓ କାର୍ଯ୍ୟର ଐକ୍ୟ ନାମକ ମୂଳନୀତି ପାଇଁ ପ୍ରୟୋଜନ ହେଉଛି ଗୋଟିଏ ଦିଗରେ ବାସ୍ତବ ଅଭିଜ୍ଞତା ଉପରେ ତତ୍ତ୍ୱ ପର୍ଯ୍ୟବସିତ ହୋଇଥିବ, ସେ ଅଭିଜ୍ଞତାରୁ ନୂଆ ନୂଆ ପ୍ରଗତିଶୀଳ ଉପାଦାନମାନଙ୍କୁ ଚିହ୍ନିତ କରା-ଯାଇଥିବ ଏବଂ ଜନସାଧାରଣଙ୍କୁ ସେହି ଉପାଦାନମାନଙ୍କ ଦିଗରେ ପରିଚାଳିତ କରାଯାଉଥିବ; ଅନ୍ୟ ଦିଗରେ କାର୍ଯ୍ୟ ପର୍ଯ୍ୟବସିତ ହେଉଥିବ ତତ୍ତ୍ୱ ଉପରେ, ଆଧୁନିକ ବିଜ୍ଞାନ ଉନ୍ମୋଚିତ କରୁଥିବା ବିକାଶର ସମ୍ଭାବ୍ୟ ଅଭିମୁଖ୍ୟଗୁଡ଼ିକୁ ବିଚାରକୁ ନେଇ କାର୍ଯ୍ୟ ହେଉଥିବ ।

ତତ୍ତ୍ୱ ଓ କାର୍ଯ୍ୟକୁ ସଂଯୁକ୍ତ କରିବା ନୀତିକୁ କାର୍ଯ୍ୟକାରୀ କରିବା ପାଇଁ ନିରବଚ୍ଛିନ୍ନ ଭାବେ ନିଜର ସାମର୍ଥ୍ୟକୁ ବଢ଼ାଇବା ଏକ ବିଜ୍ଞାନ ସମ୍ମତ ଭିତ୍ତି ଉପରେ ସମସ୍ତ ବାସ୍ତବ କର୍ମାଚରଣକୁ ନିବେଶିତ କରିବା, ନିଜର ଜ୍ଞାନକୁ ସମୃଦ୍ଧ, ଗଭୀର ଓ ପ୍ରଶସ୍ତ କରିବା, ସେ ଜ୍ଞାନକୁ ନିତ୍ୟ ନୈମିତ୍ତିକ ଜୀବନରେ ପ୍ରୟୋଗ କରିବା—ଏହାହିଁ ମାର୍କସବାଦୀ-ଲେନିନ୍‌ବାଦୀ ଶିକ୍ଷାର କର୍ତ୍ତବ୍ୟ ହୋଇ ଆସିଛି ଓ ହୋଇରହିଛି । ''ବିଦ୍ୟାଳୟ ଭିତରେ ସୀମାବଦ୍ଧ ଓ ଜୀବନର ଆଲୋଡ଼ନରୁ ବିଚ୍ୟୁତ କୌଣସି ଶିକ୍ଷାଦାନ ଓ ଶିକ୍ଷା ଲାଭରେ ଆମେ ବିଶ୍ୱାସ କରିପାରୁନା'' (ଭି. ଆଇ. ଲେନିନ୍, ରଚନାବଳୀ, ୩୧ଶ ଖଣ୍ଡ, ପୃ : ୨୯୫) ସୋଭିଏତ ଯୁବ ସମ୍ପ୍ରଦାୟକୁ ଉଦ୍‌ବୋଧନ ଦେଇ ସେ କହିଥିଲେ, ''ଆପଣ-ମାନେ ନିର୍ମାଣ କାର୍ଯ୍ୟର ସମ୍ମୁଖୀନ, ଏବଂ ଆପଣମାନେ ସେ କାର୍ଯ୍ୟ ସମ୍ପାଦନ କରି ପାରିବେ କେବଳ ସକଳ ଆଧୁନିକ ଜ୍ଞାନକୁ ଆୟତ୍ତ କରିପାରିଲେ, କମ୍ୟୁନିଜମକୁ ଏକ ଧରାବନ୍ଧା ମୁଖସ୍ଥ କରା ସୂତ୍ର, ପରାମର୍ଶ, ଉପଦେଶ, ବ୍ୟବସ୍ଥାପତ୍ର ତଥା କାର୍ଯ୍ୟକ୍ରମ ପାହ୍ୟାରୁ ଆପଣମାନଙ୍କ ନିଜର କାର୍ଯ୍ୟର ଐକ୍ୟ ପ୍ରତିଷ୍ଠା କରିଥିବା ସେହି ଜୀବନ୍ତ ବାସ୍ତବତାର ପାହ୍ୟାକୁ ରୂପାନ୍ତରିତ କରିବାକୁ ସମର୍ଥ ହେଲେ ଏବଂ

ଆପଣମାନଙ୍କର ଯାବତୀୟ କାର୍ଯ୍ୟରେ କମ୍ୟୁନିଜମ୍‌କୁ ପଥ ନିର୍ଦ୍ଦେଶକ ଭାବେ ଗ୍ରହଣ କରିବାକୁ ସମର୍ଥ ହୋଇପାରିଲେ ।" (ଭି. ଆଇ. ଲେନିନ ରଚନାବଳୀ ୩୧ଶ ଖଣ୍ଡ, ପୃ : ୨୯୦) ।

ପ୍ରକୃତରେ ଜନତାର ଗଣତନ୍ତ୍ର ଲାଗି ନୂଆ ସମାଜ ନିର୍ମାଣ ଲାଗି ଚାଲିଥିବା ସଂଗ୍ରାମରେ କାର୍ଯ୍ୟ କ୍ଷେତ୍ରରେ ଅଂଶ ଗ୍ରହଣ କଲେ ହିଁ ଜଣେ ମାର୍କସବାଦ ଲେନିନ୍‌ବାଦର ମୂଳସୂତ୍ରଗୁଡ଼ିକୁ ହୃଦୟଙ୍ଗମ କରିପାରିବ । ବିପରୀତ କ୍ରମେ ବୈପ୍ଳବିକ ସଂଗ୍ରାମ ଓ ସାମ୍ପ୍ରତିକ ସାମାଜିକ ପ୍ରକ୍ରିୟାଗତ ଅଭିଜ୍ଞତାର ଉପଲବ୍ଧି ଶ୍ରମଜୀବୀମାନଙ୍କୁ ସାଧାରଣ ତାତ୍ତ୍ୱିକ ନୀତି ଗୁଡ଼ିକୁ ଉପଲବ୍ଧି କରିବାକୁ ସାହାଯ୍ୟ କରିଥାଏ ଓ ସେଗୁଡ଼ିକର ଉପାଦାନଗୁଡ଼ିକୁ ସୁନିର୍ଦ୍ଦିଷ୍ଟ କରିଥାଏ । ଅନ୍ୟ କଥାରେ ତାତ୍ତ୍ୱିକ ଜ୍ଞାନର ବାସ୍ତବ ଅଭିଜ୍ଞତା ସହିତ ମିଳନ ଘଟିଲେ ପରସ୍ପରର ସମ୍ପୃକ୍ତି ଘଟିଥାଏ । ଦୈନନ୍ଦିନ ବାସ୍ତବ କାର୍ଯ୍ୟ ସଂକ୍ରାନ୍ତ ତଥ୍ୟ ଦ୍ୱାରା ତାତ୍ତ୍ୱିକ ଜ୍ଞାନ ପରିପୁଷ୍ଟ ହୋଇଥାଏ । ଅପର ପକ୍ଷରେ ବାସ୍ତବତା ସମ୍ପର୍କିତ ତଥ୍ୟ ମାର୍କସବାଦୀ-ଲେନିନ୍‌ବାଦୀ ନୀତିର ପରିପ୍ରେକ୍ଷୀରେ ପୁନର୍ମୂଲ୍ୟାୟନ ହୋଇଥାଏ । ତତ୍ତ୍ୱ ଓ କାର୍ଯ୍ୟର ଐକ୍ୟ ଏକ ପକ୍ଷରେ ମାର୍କସବାଦୀ-ଲେନିନ୍‌ବାଦୀ ତତ୍ତ୍ୱକୁ ହୃଦୟଙ୍ଗମ କରିବାରେ ସାହାଯ୍ୟ କରିଥାଏ ଓ ଅନ୍ୟ ପକ୍ଷରେ ଦୈନନ୍ଦିନ କାର୍ଯ୍ୟ-କଳାପକୁ ଏକ ବୈଜ୍ଞାନିକ ସ୍ତରକୁ ଉନ୍ନୀତ କରିଥାଏ ।

## ୨ୟ ପ୍ରସଙ୍ଗ

# ପୁସ୍ତକ ସହିତ କାର୍ଯ୍ୟ

ମାର୍କ୍ସବାଦ-ଲେନିନବାଦ ତତ୍ତ୍ୱ ଶିକ୍ଷା କରିବାରେ ସର୍ବୋପରି ତା'ର ମୂଳସୂତ୍ରଗୁଡ଼ିକୁ ଅବତାରଣା କରୁଥିବା ରଚନାଗୁଡ଼ିକର ଅଧ୍ୟୟନ ନିହିତ । ଖୋଦ୍ ମୌଳିକ ରଚନାଗୁଡ଼ିକ (ମାର୍କ୍ସ, ଏଙ୍ଗେଲସ, ଲେନିନଙ୍କ ରଚିତ ପୁସ୍ତିକାଦି, ଅନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ବିଷୟବସ୍ତୁ ପାର୍ଟି ଦଲିଲ ଆଦି) ମନୋଯୋଗପୂର୍ବକ ଅଧ୍ୟୟନ ନକଲେ କେହି ବିଜ୍ଞାନଭିତ୍ତିକ ଦୃଷ୍ଟିକୋଣ ହାସଲ କରିପାରିବେ ନାହିଁ କି ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ପଦ୍ଧତିବିଦ୍ୟାକୁ ଅନୁସୃତ କରିପାରିବେ ନାହିଁ । ମାର୍କ୍ସବାଦୀ—ଲେନିନବାଦୀ ତତ୍ତ୍ୱର ମୂଳସୂତ୍ରଗୁଡ଼ିକର ଗଭୀର ଅଧ୍ୟୟନ ପୂର୍ବରୁ ଶିକ୍ଷାମୂଳକ, ସାମାଜିକ, ରାଜନୈତିକ ସାହିତ୍ୟରୁ ପ୍ରଥମେ ଶିକ୍ଷାଲାଭ ଆବଶ୍ୟକ । ପ୍ରଗତିଶୀଳ ଉପନ୍ୟାସ, କାବ୍ୟ କବିତା ଓ ସାମ୍ବାଦିକ—ରଚନାଗୁଡ଼ିକରୁ ମଧ୍ୟ ବହୁ ପରିମାଣରେ ରାଜନୈତିକ ଓ ସାମାଜିକ ଜ୍ଞାତବ୍ୟ ବିଷୟ ମିଳିଥାଏ ।

ଯାହା ଇଚ୍ଛା ତାହା ପାଇଁ ଉପରଠାଉରିଆ ଭାବେ ପଢ଼ିଦେବା ଶିକ୍ଷାଲାଭ ପ୍ରକ୍ରିୟା ସହିତ ସଙ୍ଗତିଶୀଳ ନୁହେଁ । ପାଠକ ତାଙ୍କ ପଠନକ୍ରମକୁ ସୁବିବେଚନା-ପୂର୍ବକ ସଂଗଠିତ ନକଲେ ଏ ପ୍ରକ୍ରିୟା ସଫଳ ହେବନାହିଁ । ଏଥିରେ ନିହିତ :

୧ । ପ୍ରୟୋଜନୀୟ ସାହିତ୍ୟର ପ୍ରକୃଷ୍ଟ ନିର୍ବାଚନ,

୨ । ମାର୍କ୍ସବାଦ—ଲେନିନବାଦର ଚିରାୟତ ରଚନାବଳୀ ଅଧ୍ୟୟନ କରିବାର ପଦ୍ଧତି ସମ୍ପର୍କରେ ଜ୍ଞାନ,

୩ । ପୁସ୍ତକଲବ୍ଧ ତଥ୍ୟକୁ ହୃଦୟଙ୍ଗମ କରିବା ଓ ତାର ଯଥାଯଥ ନୋଟ ରଖିବାର ସାମର୍ଥ୍ୟ,

୪ । କରିଥିବା ନୋଟ୍‌ର ସାର୍ଥକ ବ୍ୟବହାର କରିବାର ସାମର୍ଥ୍ୟ,

୫ । ନିଜଜ୍ଞାନର ସାର୍ଥକ ସମୃଦ୍ଧି ସାଧନ, ପ୍ରକାଶ ଭଙ୍ଗୀର ଉନ୍ନତିସାଧନ ଚିନ୍ତାଧାରା ବ୍ୟକ୍ତ କରିବାର ପ୍ରାଞ୍ଜଳ ଶୈଳୀ ଏବଂ ବାକ୍ ସାମର୍ଥ୍ୟ ବୃଦ୍ଧି ।

## (୧) ସଠିକ୍ ପୁସ୍ତକ ନିର୍ବାଚନ

ଆଜି ବୈପ୍ଳବିକ କାର୍ଯ୍ୟକଳାପର ଯେଉଁଭଳି ଉଦ୍‌ବେଳନ ଘଟିଛି ଏବଂ ଯାବତୀୟ ଜ୍ଞାତବ୍ୟ ବିଷୟରେ ଯେଉଁଭଳି ନୂଆ ନୂଆ ତଥ୍ୟର ପ୍ରବଳ ଆବିଷ୍କାର ଘଟୁଛି, ସେଥିରେ ପ୍ରୟୋଜନୀୟ ପଠନବସ୍ତୁ ବାଛିବାକୁ ସମର୍ଥ ହେବାର ଆବଶ୍ୟକତା ଦେଖା ଦେଇଛି ।

ସଠିକ ପୁସ୍ତକ ନିର୍ବାଚନ ଆମକୁ ସମର୍ଥ କରିଥାଏ ଆମ ସମୟକୁ ଓ ଶକ୍ତିକୁ ଯଥାର୍ଥଭାବେ ବିନିଯୋଗ କରିବାରେ ଏବଂ ଶିକ୍ଷାଲାଭ ପ୍ରକ୍ରିୟାକୁ ଅଧିକ ଫଳପ୍ରଦ କରି ସଙ୍ଗଠିତ କରିବାରେ । ଲେନିନଙ୍କ ସହଧର୍ମିଣୀ ଓ ସହକର୍ମିଣୀ ନାଦେଝ୍‌ଦା କ୍ରୁପସ୍କାୟା ଲେଖିଥିଲେ : "କେତେକ ବହିର ଧର୍ମ ସଙ୍ଗଠିତ କରିବା ଓ ଆଉ କେତେକର ଧର୍ମ ଅସଂଗଠିତ କରିବା । ଏଣୁ ସଠିକ୍ ପୁସ୍ତକ ନିର୍ବାଚନ କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।" (ଏନ୍. କେ କ୍ରୁପସ୍କାୟା, ଶିକ୍ଷାସଂକ୍ରାନ୍ତ ନିର୍ବାଚିତ ରଚନାବଳୀ, ମସ୍କୋ, ୧୯୫୫, ପୃ : ୫୮୪ (ରୁଷ୍ ଭାଷାରେ) ।

ପ୍ରାୟ ସବୁ ପୁସ୍ତକାଗାରରେ କ୍ୟାଟ୍‌ଲଗ୍ କାର୍ଡ଼ ରହିଛି । ପ୍ରତ୍ୟେକ କାର୍ଡ଼ରେ ପ୍ରାୟତଃ ପୁସ୍ତକର ବିଷୟବସ୍ତୁ ସମ୍ପର୍କରେ ସୂଚନା ରହିଥାଏ । ଏଇଥିରୁ ପଠନାଧୀନ ବିଷୟବସ୍ତୁ ଉପରେ ପ୍ରୟୋଜନୀୟ ପ୍ରାଥମିକ ଭାବେ ବଛାଯାଇ ପାରେ ।

ତା'ପରେ ନିର୍ବାଚିତ ପୁସ୍ତକାବଳୀ ମଧ୍ୟରୁ ଅସଲ ପୁସ୍ତକ ବାଛିବାକୁ ପଡ଼ିବ । ପ୍ରତ୍ୟେକ ବହିର ବାହ୍ୟିକ ତଥ୍ୟ ସହିତ ପ୍ରଥମେ ପରିଚିତ ହୁଅନ୍ତୁ । ଯଥା ଲେଖକଙ୍କ ନାମ, ବହିର ଶିରୋନାମା, ପ୍ରକାଶନ ସମୟ ଓ ସ୍ଥାନ, ଇତ୍ୟାଦି । ଅନେକ କ୍ଷେତ୍ରରେ ବହିର ଶିରୋନାମା ତଳେ ଆଉ ଏକ ଉପ—ଶିରୋନାମା ରହିଥାଏ, ଯେଉଁଥିରୁ ବହିରେ ଆଲୋଚନା କରାଯାଇଥିବା ବିଷୟ ବସ୍ତୁର ସୂଚନା ମିଳିଥାଏ । ପ୍ରକାଶନ ସମୟରୁ ମିଳେ ଗୋଟିଏ ଐତିହାସିକ କାଳର ସୂଚନା । ଅତଏବ ଆପଣ ସେହି କାଳ ବିଷୟରେ ଯେଉଁ ଜ୍ଞାନ ଅର୍ଜନ କରିସାରିଛନ୍ତି ତାକୁ ପୁସ୍ତକର ଆଲୋଚ୍ୟ ବସ୍ତୁ ସହିତ ମିଳାଇ ପାରିବେ ଏବଂ ଅତିରିକ୍ତ ଜ୍ଞାନ ଆପଣଙ୍କୁ ପୁସ୍ତକଟି ଅଧ୍ୟୟନ କରିବାପାଇଁ ପଥପ୍ରଦର୍ଶକ ଭାବେ କାମ କରିବ ।

କେତେକ ପୁସ୍ତକର ମଲାଟ ପଛରେ ପୁସ୍ତକ ବିଷୟରେ ସଂକ୍ଷିପ୍ତ ସାର ରହିଥାଏ । ସେତକ ପଢ଼ିବା ଉଚିତ, କାରଣ ସେଥିରୁ ପୁସ୍ତକର ବିଷୟ ବସ୍ତୁର ପରିଚୟ ମିଳିବା ସଙ୍ଗେ ସଙ୍ଗେ ଆଲୋଚନାମୂଳକ ମତାମତ ମଧ୍ୟ ମିଳିଥାଏ ।

ସୂଚୀପତ୍ର ପୃଷ୍ଠାରେ ମଧ୍ୟ ଆଖି ପକାଇବା ଉଚିତ । ସେଥିରୁ ଦେଖି ପାରିବେ ବହିରେ କ'ଣ କ'ଣ ବିଭାଗ ଓ ଅଧ୍ୟାୟ ରହିଛି । ସୂଚୀପତ୍ରରୁ ମିଳିବ ବହିଟି ବିପରି ବିନ୍ୟାସ ହୋଇଛି ତା'ର ସୂଚନା, ଅତଏବ ଆପଣ କେଉଁ ବିଭାଗ ଆଗ ପଢ଼ିବେ, କେଉଁଟି ପଛେ ପଢ଼ିବେ ତାହା ସ୍ଥିର କରିପାରିବେ ।

ସୂଚୀପତ୍ର ବିଷୟରେ ଅବହିତ ହୋଇସାରି ଆପଣଙ୍କର ଉପକ୍ରମଣିକା ବା ମୁଖବନ୍ଧକୁ ମନୋଯୋଗ ସହକାରେ ପଢ଼ିବା ଦରକାର । ମୁଖବନ୍ଧରେ ପୁସ୍ତକଟିର ସାରାଂଶ ରହିଥାଏ (ଯାହ ମଲାଟ ପଛ ପୃଷ୍ଠାରେ ଦିଆ ଯାଇନଥାଏ) । ପୁଣି ମୁଖବନ୍ଧରେ ରହିଥାଏ ବହିର ବିଷୟବସ୍ତୁକୁ ଅବତାରଣା କରିବାରେ ଲେଖକଙ୍କ ଚିନ୍ତାଧାରା ଓ ଏହାର ପ୍ରାସଙ୍ଗିକତା ସଂକ୍ରାନ୍ତରେ ବକ୍ତବ୍ୟ । କେତେକ ଲେଖକ ପ୍ରଣୀତ ପୁସ୍ତକର ଗଠନବିନ୍ୟାସର ସୂଚନା ଦେଇଥାନ୍ତି; ପୁସ୍ତକ ରଚନାର ଇତିହାସ ଓ ପ୍ରଣାଳୀ ବର୍ଣ୍ଣନା କରିଥାନ୍ତି ଏବଂ କେଉଁ କେଉଁ ସୂତ୍ରରୁ ଆଲୋଚ୍ୟ ବସ୍ତୁ ସଂକ୍ରାନ୍ତ ତଥ୍ୟ ଆହରଣ କରିଛନ୍ତି ତାହା ମଧ୍ୟ ଦର୍ଶାଇ-ଥାନ୍ତି । ଅନେକ ସମୟରେ ପାଠକଙ୍କ ସୁବିଧା ପାଇଁ ପୁସ୍ତକର ସ୍ୱାତନ୍ତ୍ର୍ୟଗୁଡ଼ିକ ମଧ୍ୟ ମୁଖବନ୍ଧରେ ଦର୍ଶା ଯାଇଥାଏ । ଉଦାହରଣସ୍ୱରୂପ ଲେନିନ୍ ତାଙ୍କ ପ୍ରଣୀତ ସାମ୍ରାଜ୍ୟବାଦ, ପୁଞ୍ଜିବାଦର ସର୍ବୋଚ୍ଚ ସୋପାନ ପୁସ୍ତକର ମୁଖବନ୍ଧରେ ସତର୍କ କରାଇ ଦେଇଥିଲେ ଯେ ପୁସ୍ତକଟି ଆଇନାନୁମୋଦିତ ପ୍ରକାଶନକୁ ଆଖିରେ ରଖି ରଚନା କରାଯାଇଛି । ଯେହେତୁ ଜାରଶାହୀ ବାଧା ନିଷେଧରୁ ରକ୍ଷା ପାଇ ପୁସ୍ତକଟି ପ୍ରକାଶ ପାଉ ବୋଲି ସେ ଚାହିଁଥିଲେ ସେହେତୁ ପ୍ରଧାନ ପ୍ରସ୍ତାବନା ଓ ଉପସଂହାରଗୁଡ଼ିକୁ ସେ "ଅତ୍ୟନ୍ତ ସାବଧାନତା ସହକାରେ, ଇଂଗିତ ଦ୍ୱାରା, ଶ୍ଳେଷ ଭାଷାରେ" ଉପସ୍ଥାପନା କରିଥିଲେ, "ଯେଉଁ ବିଡ଼ମ୍ବନା ଭାଷାରେ କି କି ସମସ୍ତ ବିପ୍ଲବୀଙ୍କୁ ଯେ କୌଣସି 'ଆଇନାନୁମୋଦିତ' ପୁସ୍ତକଟିଏ ଲେଖିବାକୁ ଜାର୍ ଶାସନ ବାଧ୍ୟ କରୁଥିଲା ।" (ଭି ଆଇ ଲେନିନ୍, ରଚନାବଳୀ, ୨୨ଶ ଖଣ୍ଡ ପୃ : ୧୮୭) ।

ବହୁ ସଂସ୍କରଣରେ ପ୍ରକାଶ ପାଇଥିବା ଗୋଟିଏ ପୁସ୍ତକର ମୁଖବନ୍ଧରୁ ତା'ର ସିଦ୍ଧାନ୍ତଗୁଡ଼ିକର ସତ୍ୟତା ଓ ଯଥାର୍ଥ୍ୟର ମୂଲ୍ୟାୟନ ମିଳିଥାଏ, ପୁଣି ଆଲୋଚ୍ୟ ବିଷୟ ସମ୍ପର୍କରେ ଉତ୍ତରୋତ୍ତର ତଥ୍ୟ ମଧ୍ୟ ମିଳିଥାଏ । ବହିରେ ଆଲୋଚିତ ହୋଇଥିବା ପ୍ରଶ୍ନଗୁଡ଼ିକ ଉପରେ ଲେଖକଙ୍କ ଦୃଷ୍ଟିଭଙ୍ଗୀ ମଧ୍ୟ ଏଥିରୁ ମିଳେ । ଦୃଷ୍ଟାନ୍ତ ସ୍ୱରୂପ ଲେନିନଙ୍କ ମୁଖବନ୍ଧଗୁଡ଼ିକ ଏହି କାରଣରୁ ଅତ୍ୟନ୍ତ ହୃଦୟଗ୍ରାହୀ—କାରଣ ବହିଟିରେ ବିସ୍ତାରିତ ଓ ପ୍ରତିପାଦିତ ହୋଇଥିବା ତତ୍ତ୍ୱମାନ ଏହି ମୁଖବନ୍ଧରେ ସେ ରେଖାଙ୍କିତ କରିଥାନ୍ତି ।

ମୁଖବନ୍ଧ, ଭୂମିକା ଆଦିରୁ ମଧ୍ୟ ଜଣାପଡ଼େ ବହିଟିରେ ପଠନାଧୀନ ସମସ୍ୟା-ଗୁଡ଼ିକୁ କି ମାତ୍ରାରେ ଅବତାରଣା କରାଯାଇଛି । ଏତଦ୍ୱାରା ସ୍ୱତନ୍ତ୍ର ଆଗ୍ରହ ସୃଷ୍ଟି କରାଯାଇ ପାରେ, ପାଠକଙ୍କୁ ଅଧିକ ମନଯୋଗୀ କରାଯାଇ ପାରେ ଏବଂ କୌଣସି ନା କୌଣସି ସମସ୍ୟା ଉପରେ ଅଭିନିବିଷ୍ଟ ହେବାପାଇଁ ସାହାଯ୍ୟ କରିପାରେ ।

ପୁଣି ପରିଶିଷ୍ଟ ବା ଉପସଂହାରରେ ମଧ୍ୟ ଆଖି ପକାଇବା ବିଧେୟ । ନିୟମତଃ ଏହି ଉପସଂହାରରେ ପୁସ୍ତକରେ ହୋଇଥିବା ଗବେଷଣାର ସାମଗ୍ରିକ ସାରର ଅବତାରଣା ହୋଇଥାଏ, ସାମାନ୍ୟୀକରଣ କରାଯାଇଥାଏ, ମୁଖ୍ୟ ସିଦ୍ଧାନ୍ତଗୁଡ଼ିକର ଉଲ୍ଲେଖ ରହିଥାଏ, ସମସ୍ୟାଗୁଡ଼ିକର ପରବର୍ତ୍ତୀ ଅଧ୍ୟୟନ ଲାଗି ମାର୍ଗ ପ୍ରଦର୍ଶିତ ହୋଇଥାଏ ଏବଂ ସଂପୃକ୍ତ ସମସ୍ୟାବଳୀର ସୂଚନା ମଧ୍ୟ ରହିଥାଏ । ବହିଟିର ଏହି ଅଂଶକୁ ପଢ଼ିବା ଦ୍ୱାରା ପାଠକ ଜାଣିପାରନ୍ତି ଲେଖକଙ୍କ ପରିଶ୍ରମର ସାଧାରଣ ଫଳାଫଳକୁ ଏବଂ ସମଗ୍ର ବହିଟିକୁ ଯତ୍ନ ସହକାରେ ଅଧ୍ୟୟନ କଲେ କେତେ ଉପକାର ମିଳିବ ତାହା ନିରୂପଣ କରି ପାରନ୍ତି ।

ତା'ପରେ ପୃଷ୍ଠା ପୃଷ୍ଠା କରି ପଢ଼ି ପୁସ୍ତକଟି ସମ୍ପର୍କରେ ଆପଣ ଆପଣଙ୍କର ପ୍ରାଥମିକ ଧାରଣା କରିପାରନ୍ତି । ଯେଉଁ ଧାଡ଼ିଗୁଡ଼ିକ ରେଖାଙ୍କିତ ବା ସ୍ୱତନ୍ତ୍ର ଅକ୍ଷରରେ ମୁଦ୍ରିତ ସେଥିପ୍ରତି ଅଧିକ ଧ୍ୟାନ ଦିଅନ୍ତୁ । ଏହିଭଳି ନିର୍ବାଚନମୂଳକ ଅଧ୍ୟୟନ ଦ୍ୱାରା ପୁସ୍ତକର ଭାଷା, ଶୈଳୀ ଓ ତାତ୍ତ୍ୱିକ ସ୍ତର ବିଷୟରେ ଧାରଣା ମିଳିଥାଏ । ବହିର ପୃଷ୍ଠାଗୁଡ଼ିକୁ ଦେଖିଦେଲେ, ତାର ଇଙ୍ଗିତ ବିଷୟବସ୍ତୁ ଓ ଟିପ୍ପଣୀଗୁଡ଼ିକ ଉପରେ ଆଖି ବୁଲାଇଲେ ପାଠକ ପୁସ୍ତକଟି ବା ତା'ର କେଉଁ ଅଂଶ ତାଙ୍କର ଆଗ୍ରହ ଥିବା ବିଷୟବସ୍ତୁ ଅଧ୍ୟୟନ ଲାଗି କେତେ ଉପାଦେୟ ତାହା ଜାଣିପାରିବେ ।

## (୨) ପଠନର ଧାରା

ମାର୍କସବାଦୀ ଲେନିନବାଦୀ ସାହିତ୍ୟ ଅଧ୍ୟୟନ ଶିକ୍ଷାଲାଭର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରକ୍ରିୟା । ଏ ପ୍ରକ୍ରିୟାଟି ହେଉଛି ସଚେତନ ଓ ସୃଜନଶୀଳ ଭାବେ ଚିନ୍ତା କରିବା, ପଠନାଧୀନ ପୁସ୍ତକର ବିଷୟବସ୍ତୁକୁ ଯାଞ୍ଚ କରିବା, ବକ୍ତବ୍ୟର ଯୁକ୍ତିଯୁକ୍ତତାକୁ ପରୀକ୍ଷା କରିବା, ମୁଖ୍ୟ ଚିନ୍ତାଧାରା ଓ ତତ୍ତ୍ୱକୁ ହୃଦୟଙ୍ଗମ କରିବା, ଲବ୍ଧ ଜ୍ଞାନକୁ ପୂର୍ବରୁ ଆହୃତ ଜ୍ଞାନ ସହିତ ତୁଳନା କରିବାର ପ୍ରକ୍ରିୟା । ଏ ପ୍ରକ୍ରିୟା ହେଉଛି ସଦ୍ୟ ଜ୍ଞାନ ଆହରଣ କରି ବାସ୍ତବ କାର୍ଯ୍ୟରେ ପ୍ରୟୋଗ କରିବା ।

ମାର୍କସବାଦ-ଲେନିନବାଦ ତତ୍ତ୍ୱର ପ୍ରଣେତାମାନଙ୍କ ରଚନାବଳୀ, ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ନିର୍ଦ୍ଦେଶ ଓ ପାର୍ଟି ଦଲିଲମାନ ଶ୍ରମଜୀବୀ ଜନଗଣଙ୍କ ସାମାଜିକ ମୁକ୍ତିର ମହତ୍ ଚିନ୍ତାଧାରାରେ ଆପ୍ଲୁତ । ଏତଦ୍ଭିନ୍ନ ପ୍ରତ୍ୟେକଟି ରଚନାରେ ରହିଛି ଭାବାଦର୍ଶଗତ ସମସ୍ୟାଗୁଡ଼ିକର ତାତ୍ତ୍ୱିକ ସ୍ପଷ୍ଟୀକରଣ, ସାମାଜିକ ପ୍ରକ୍ରିୟାବଳୀର ମୂଲ୍ୟାୟନ ପଦ୍ଧତି, ସାମାଜିକ ବିକାଶଗତ କର୍ତ୍ତବ୍ୟମାନ ସମ୍ପାଦନ କରିବାର ପ୍ରବଣତାଗୁଡ଼ିକର ବିଶ୍ଳେଷଣ ଏବଂ ଶ୍ରମଜୀବୀ ଜନସାଧାରଣଙ୍କ ଶତ୍ରୁ ତଥା ଶାନ୍ତି, ଗଣତନ୍ତ୍ର ଓ ସାମାଜିକ ପ୍ରଗତିର ଶତ୍ରୁମାନଙ୍କ ପରିଚୟ ।

ମୂଳ ଗ୍ରନ୍ଥମାନ ହେଉ କି ସାମାଜିକ ତଥା ରାଜନୈତିକ ସାହିତ୍ୟର ସୁବୋଧ ସଂସ୍କରଣ ହେଉ, ସବୁଗୁଡ଼ିକର ଅଧ୍ୟୟନ ସଫଳ ହେବ ଯଦି ପଠନର ମୂଳ ପଦ୍ଧତିକୁ ଅନୁସରଣ କରାଯାଏ । ପ୍ରଥମ କଥା ହେଉଛି ମନୋଯୋଗ ନିବେଶ କଲେ ହିଁ ପଠନ ଫଳପ୍ରଦ ହେବ । ଅଧ୍ୟବସାୟ ଓ ଅଭିନିବେଶ ସହକାରେ ମୌଳିକ ବିଷୟବସ୍ତୁକୁ ଧରିବାର ଲକ୍ଷ୍ୟ ରଖି ପଢ଼ିଲେ ଅଧ୍ୟୟନ ସଫଳ ହେବ । କିଛି ପାଠକ କଠିନ ଅଂଶ ଦେଖିଲେ କେତେକ ବାକ୍ୟ ଓ ବେଳେ ବେଳେ କେତେକ ଅନୁଚ୍ଛେଦ ପୁରା ଛାଡ଼ିଦେଇ ପଢ଼ିବାରେ ଲାଗନ୍ତି । ସେମାନେ କେବଳ ମୁଖ୍ୟ ଚିନ୍ତାଧାରା ବା ତତ୍ତ୍ୱଟିକୁ ଧରିବା ପଛରେ ଧାଆଁନ୍ତି । ଏହାଦ୍ୱାରା କିନ୍ତୁ ବିକୃତ ଅବଧାରଣା ହିଁ ମିଳିଥାଏ ।

ମାର୍କସବାଦ ଓ ଲେନିନବାଦର ଚିରସ୍ମୃତ ଗ୍ରନ୍ଥାବଳୀ ଏବଂ ପାର୍ଟି ଦଲିଲମାନ ପଢ଼ିବା ବେଳେ ଦେଖିବାକୁ ପାଇବେ ଯେ ମୁଖ୍ୟ ତତ୍ତ୍ୱ କି ଚିନ୍ତାଧାରା କି ତାତ୍ତ୍ୱିକ ମୂଳସୂତ୍ର ଆଦି ନାନା ଯୁକ୍ତି ଓ ଦୃଷ୍ଟାନ୍ତ ଆଦି ଦ୍ୱାରା ପ୍ରତିପାଦିତ ଓ ସମର୍ଥିତ ହୋଇଛି ସମଗ୍ର ରଚନା ଭିତରେ । ସେହି କାରଣରୁ କୌଣସି ଗୋଟିଏ ଐତିହାସିକ କାଳ ପାଇଁ ଉପସ୍ଥାପିତ ତାତ୍ତ୍ୱିକ ନିର୍ଦ୍ଦେଶକୁ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରିବା ପାଇଁ ପାଠକଙ୍କର ଭିତ୍ତିରେ ଥିବା ସାର ଉପାଦାନଗୁଡ଼ିକୁ ଦେଖି ପାରିବା, ମୁଖ୍ୟ ଚିନ୍ତାଧାରାକୁ ଓ ଆଧୁନିକ ସାମାଜିକ କ୍ରିୟାକଳାପ ଦୃଷ୍ଟିରୁ ସେଥି ସହିତ ଉପସ୍ଥାପିତ ହୋଇଥିବା ଯୁକ୍ତିଗୁଡ଼ିକୁ ମୂଲ୍ୟାୟନ କରି ପାରିବାର ସାମର୍ଥ୍ୟ ଥିବା ଆବଶ୍ୟକ ।

ମାର୍କସବାଦ-ଲେନିନବାଦର ଚିରସ୍ମୃତ ଗ୍ରନ୍ଥମାନ ପଢ଼ିବା ପାଇଁ ଏହିଭଳି ପଦ୍ଧତିସଂଗତ ଦୃଷ୍ଟିକୋଣ ଆବଶ୍ୟକ, କାରଣ ସେଗୁଡ଼ିକ ପାଠ୍ୟପୁସ୍ତକ ରୂପେ ରଚିତ ହୋଇନାହାନ୍ତି, ରଚିତ ହୋଇଛନ୍ତି ସାମାଜିକ ବିକାଶର ପ୍ରୟୋଜନୀୟତାଗୁଡ଼ିକୁ ଚରିତାର୍ଥ କରିବା ନିମନ୍ତେ । ମାର୍କସ୍, ଏଙ୍ଗେଲସ୍, ଲେନିନ ଗୋଟିଏ ନିର୍ଦ୍ଦିଷ୍ଟ ଐତିହାସିକ ପରିସ୍ଥିତିରୁ ଉଦ୍ଭୂତ ବାସ୍ତବ ପ୍ରଶ୍ନଗୁଡ଼ିକର

ସମ୍ୟକ ବିଶ୍ଳେଷଣର ଭିତ୍ତି ଉପରେ ସେ ତାତ୍ତ୍ୱିକ ସମସ୍ୟାଗୁଡ଼ିକର ବ୍ୟବଚ୍ଛେଦ କରୁଥିଲେ । ଆଜି ମଧ୍ୟ ସେହି ସାଧାରଣ ତାତ୍ତ୍ୱିକ ଉପପାଦ୍ୟଗୁଡ଼ିକ କର୍ମପ୍ରବିଣତା ପାଇଁ ପଥ ନିର୍ଦ୍ଦେଶକ ରୂପେ ଉପଯୋଗୀ ହୋଇ ରହିଛନ୍ତି । ଅବଶ୍ୟ ମୂଳ ଗ୍ରନ୍ଥଗୁଡ଼ିକରେ ବର୍ଣ୍ଣିତ ଘଟଣା କେନ୍ଦ୍ରିକ ବିଷୟବସ୍ତୁଗୁଡ଼ିକ ଆଜି ଅକାମି ବୋଲି ମନେହେବ । ତଥାପି ସେହି କାଳର ଐତିହାସିକ ପରିସ୍ଥିତିକୁ ଅଧ୍ୟୟନ କରିବା ଲାଗି ଓ ଲକ୍ଷମୂଳକ ଉପାଦାନ ଭାବେ ବ୍ୟବହୃତ ହେବା ଲାଗି ସେଗୁଡ଼ିକର ଉପାଦେୟତା ଅନସ୍ୱୀକାର୍ଯ୍ୟ ।

ମୂଳ ଗ୍ରନ୍ଥମାନ ଅଧ୍ୟୟନ କରିବା ଲାଗି ଗୋଟିଏ ବଡ଼ ଆବଶ୍ୟକତା ହେଉଛି ପଠିତ ବିଷୟବସ୍ତୁଗୁଡ଼ିକୁ ସଚେତନଭାବେ ହୃଦୟଙ୍ଗମ କରିବା । ଅଧ୍ୟୟନର ଲକ୍ଷ୍ୟ ନୁହେଁ ଯାନ୍ତ୍ରିକଭାବେ ମନେ ରଖିବା ବା ଗୁଡ଼ାଏ ଜ୍ଞାନ ଆହରଣ କରିବା, ତା'ର ଲକ୍ଷ୍ୟ ହେଉଛି ପଠିତ ସମସ୍ୟାକୁ ହୃଦୟଙ୍ଗମ କରିବା । ମୌଳିକ ଚିନ୍ତାଧାରା ଓ ତତ୍ତ୍ୱ ଯେତେବେଳେ ଜଣକର ଜୀବନର ନିଜସ୍ୱ ଅଶ୍ରୟ ହେବ ସେତେବେଳେ ସେ ଚିନ୍ତାଧାରାକୁ ସାଇତି ରଖିବା ପାଇଁ ଓ ଦୈନନ୍ଦିନ ଜୀବନର ଦିଶାରୀ ରୂପେ ଅନୁସରଣ କରିବା ପାଇଁ ଜଣେ ସମର୍ଥ ହେବେ ।

ପଠିତ ପୁସ୍ତକର ବିଷୟବସ୍ତୁକୁ ହୃଦୟଙ୍ଗମ କରିବା ପାଇଁ କେତୋଟି ମୁଖ୍ୟ ଆବଶ୍ୟକତା ହେଉଛି : (୧) ଅତିରିକ୍ତ ବା ଗୌଣ ବକ୍ତବ୍ୟ, ଉପପାଦ୍ୟ ଓ ଯୁକ୍ତିଗୁଡ଼ିକଠାରୁ ମୁଖ୍ୟ ବକ୍ତବ୍ୟ, ଉପପାଦ୍ୟ ଓ ଯୁକ୍ତିଗୁଡ଼ିକୁ ବାଛି ପାରିବାର ସାମର୍ଥ୍ୟ; (୨) ବକ୍ତବ୍ୟ ଭିତରୁ ଲେଖକଙ୍କ ଉପପାଦ୍ୟର ସତ୍ୟତା ବାହାର କରିପାରିବାର ସାମର୍ଥ୍ୟ ; (୩) ଲେଖକ ନିଜର ସିଦ୍ଧାନ୍ତ ସପକ୍ଷରେ ଉପସ୍ଥାପିତ କରିଥିବା ଦୃଷ୍ଟାନ୍ତଗୁଡ଼ିକର ପ୍ରାସଙ୍ଗିକତା ଓ ଉପଯୋଗିତାକୁ ଉପଲବ୍ଧି କରିବା; (୪) ପୁସ୍ତକଟିକୁ ଦୋଷ ଗୁଣ ବିଚାର ପୂର୍ବକ ବିଶ୍ଳେଷଣ କରି ତା' ବିଷୟରେ ନିଜର ମତାମତ ଗଠନ କରିବାର ସାମର୍ଥ୍ୟ; (୫) ଲେଖକଙ୍କ ମୁଖ୍ୟ ସିଦ୍ଧାନ୍ତଗୁଡ଼ିକର ଏକ ସାଧାରଣ କଳନା କରିବାର ସାମର୍ଥ୍ୟ ।

ମୂଳ ଗ୍ରନ୍ଥଗୁଡ଼ିକୁ ଅଧ୍ୟୟନ କରିବାର ଆଦ୍ୟ ଅବସ୍ଥାରେ ବିଷୟବସ୍ତୁକୁ ବୁଝିବାରେ ଅସୁବିଧା ହୋଇପାରେ ।

ଅଧିକାଂଶ ଅସୁବିଧା ହେବ ପୁସ୍ତକ ଲେଖା ହୋଇଥିବା କାଳର ଐତିହାସିକ ପରିସ୍ଥିତି ସମ୍ପର୍କରେ ଜ୍ଞାନର ଅଭାବ ରହିଥିଲେ । ପାଠକ ସେହି କାଳର ଐତିହାସିକ ଘଟଣାବଳୀ, ବ୍ୟକ୍ତିତ୍ୱମାନଙ୍କ, ଭାବାଦର୍ଶଗତ ଅବଧାରଣା ଓ ତତ୍ତ୍ୱଗୁଡ଼ିକୁ ପ୍ରଥମ କରି ଦେଖିବାକୁ ପାଇବେ । ପୃଷ୍ଠା ତଳେ ଦିଆ ଯାଇଥିବା ସ୍ପଷ୍ଟୀକରଣ ଓ ପରିଶିଷ୍ଟଗୁଡ଼ିକ ପ୍ରତି ଧ୍ୟାନ ଦେଲେ ଅଧ୍ୟୟନ

ଅଧିକ ଫଳପ୍ରଦ ହେବ । ଆବଶ୍ୟକ ସ୍ଥଳେ ଅଭିଧାନ ଓ ଜ୍ଞାନକୋଷଗୁଡ଼ିକର ସାହାଯ୍ୟ ମଧ୍ୟ ନିଆଯିବା ଉଚିତ ଉଚିତ୍ । ଏହିପରି କଲେ ଅଧ୍ୟୟନାଧୀନ ପୁସ୍ତକ ଓ ତତ୍ସନ୍ନିହିତ ସିଦ୍ଧାନ୍ତ ଗୁଡ଼ିକ ସମ୍ପର୍କରେ ଅଧିକ ଧାରଣା ଲାଭ ହେବ ।

ଲେଖକଙ୍କ ସ୍ତରର ଚିନ୍ତା ନକରିପାରିବା ଓ ତାଙ୍କ ଯୁକ୍ତିର ଯଥାର୍ଥ୍ୟ ବୁଝି ନପାରିବା କାରଣରୁ ମଧ୍ୟ ଅସୁବିଧା ଉପୁଜିପାରେ । ପୁସ୍ତକଟି ଯେତେ ଅଧିକ ବିଗକୁ ପ୍ରସାରିତ ହୋଇଥିବ ଅଧ୍ୟୟନ ସେତେ ଦୁଃସାଧ୍ୟ ହୋଇଥିବ । ଗୋଟିଏ ଦୃଷ୍ଟାନ୍ତ ହେଉଛି ଯେ ପାର୍ଟି କଂଗ୍ରେସଗୁଡ଼ିକର ଦଲିଲଗୁଡ଼ିକୁ ବୁଝିବା ସହଜ ନୁହେଁ, ଅଥଚ ସେଗୁଡ଼ିକର ସନ୍ନିବିଷ୍ଟ ସିଦ୍ଧାନ୍ତ ଓ ଉପପାଦ୍ୟ ଗୁଡ଼ିକ ସ୍ପଷ୍ଟ ଏବଂ ପ୍ରାଞ୍ଜଳ । ଏହି ଦଲିଲ ଗୁଡ଼ିକରେ ପ୍ରଦତ୍ତ ତଥ୍ୟାବଳୀର ବହୁଳତା ଚିନ୍ତାଧାରାର ବଳିଷ୍ଠତା ସାମାନ୍ୟକରଣରେ ବ୍ୟାପ୍ତି ଏବଂ ବୈଜ୍ଞାନିକ ବିଶ୍ଳେଷଣରେ ପରିସର ଯାହା ସେଥିପାଇଁ ସେଗୁଡ଼ିକୁ ଗଭୀର ମନଯୋଗ ସହକାରେ ପୁଙ୍ଖାନୁପୁଙ୍ଖଭାବେ ଅଧ୍ୟୟନ କରାଯିବା ଆବଶ୍ୟକ । ଏହିଭଳି ଆୟାସସାଧ୍ୟ ଅଧ୍ୟୟନ ଆମକୁ କେବଳ ପ୍ରାସଙ୍ଗିକ ସାମାଜିକ ଓ ରାଜନୈତିକ ତଥ୍ୟାବଳୀ ଆହରଣ କରିବାରେ ସାହାଯ୍ୟ କରିବ ନାହିଁ, ମାର୍କସବାଦୀ- ଲେନିନ୍‌ବାଦୀ ତତ୍ତ୍ୱକୁ ସୃଜନାତ୍ମକ ଭାବେ ସମ୍ମୁଦ୍ଧ କରୁଥିବା ସାଧାରଣ ତାତ୍ତ୍ୱିକ ସୂତ୍ରଗୁଡ଼ିକୁ ମଧ୍ୟ ଆୟତ୍ତ କରିବାରେ ସାହାଯ୍ୟ କରିବ ।

ବେଳେ ବେଳେ ବିଷୟବସ୍ତୁକୁ ପ୍ରକାଶ କରିବାର ଭଙ୍ଗୀ ମଧ୍ୟ ଅସୁବିଧା ସୃଷ୍ଟି କରିଥାଏ । କେତେକ ପୁସ୍ତକ ବଡ଼ ଜଟିଳ ଭାଷାରେ ଲେଖା ହୋଇଥାଏ । ଅନେକ ସମୟରେ ମାର୍କସ୍‌ବାଦ—ଲେନିନବାଦର ପ୍ରତିଷ୍ଠାତାମାନେ ନିଜର ବକ୍ତବ୍ୟ ପ୍ରକାଶ କଲାବେଳେ ଅନ୍ୟକୁ ଆକ୍ରମଣ କରିବାର ଭାଷା ବ୍ୟବହାର କରିଥିବାର ଦେଖାଯାଏ । ଯେତେବେଳେ ସେମାନେ ସୃଷ୍ଟି କରିଥିବା ତତ୍ତ୍ୱକୁ ବିକୃତ କରିବାର ଉଦ୍ୟମହୋଇଛି ସେତିକବେଳେ ହିଁ ସେମାନେ ଏହିଭଳି ଅବୈଜ୍ଞାନିକ ଅବଧାରଣା, ସଂସ୍କାରବାଦ ଦକ୍ଷିଣପନ୍ଥୀ ଓ ବାମପନ୍ଥୀ ସୁବିଧାବାଦ ଓ ପେଟି-ବୁର୍ଜୁଆ, ଅସ୍ଥିରଚିତ୍ତତା ବିରୁଦ୍ଧରେ ଏହିଭଳି ଭାଷା ବ୍ୟବହାର କରିଛନ୍ତି । ଏହିଭଳି ବିଷୟବସ୍ତୁ ଅଧ୍ୟୟନ କଲାବେଳେ ପାଠକଙ୍କୁ ପ୍ରକାଶଭଙ୍ଗୀର ଧାରା, ପ୍ରଶ୍ନ ଏବଂ ସିଦ୍ଧାନ୍ତ ଓ ତତ୍ତ୍ୱସପକ୍ଷ ଯୁକ୍ତି ଉପସ୍ଥାପିତ କରିବାର ଭଙ୍ଗୀ ଓ ତତ୍ତ୍ୱସହିତ ବିରୋଧୀ ପକ୍ଷର ଯୁକ୍ତିର ଦୃଷ୍ଟିକୋଣକୁ ମନୋଯୋଗ ସହକାରେ ଲକ୍ଷ୍ୟ କରିବାକୁ ହେବ ।

ବେଳେବେଳେ ଅନ୍ତର୍ନିହିତ ଚିନ୍ତାଧାରାକୁ ବୁଝିନପାରିବା କାରଣରୁ ବିଷୟବସ୍ତୁକୁ ବୁଝିବା ମଧ୍ୟ ପାଠକ ପକ୍ଷରେ କଷ୍ଟକର ହୋଇଥାଏ । ଏଭଳି କ୍ଷେତ୍ରରେ ସେ ଲେଖକଙ୍କର ଗୋଟିଏ ଗୋଟିଏ ମନ୍ତବ୍ୟର ଅସ୍ପଷ୍ଟତାକୁ ଉପ-

ଲବ୍ଧ କରନ୍ତି, ମାତ୍ର ତା'ର ଅର୍ଥକୁ ହୃଦୟଙ୍ଗମ କରିପାରନ୍ତି ନାହିଁ । ଯଦି ସେ ସେହି ବିଷୟବସ୍ତୁରେ ବର୍ଣ୍ଣିତ ଐତିହାସିକ ପରିସ୍ଥିତି, ଘଟଣାବଳୀ, ବ୍ୟକ୍ତିବିଶେଷଙ୍କ ଚିନ୍ତାଧାରା ଓ ଆଚରଣ ଆଦି ବିଷୟରେ ଅବହିତ ଥିବେ ତାହେଲେ ଅନ୍ତର୍ନିହିତ ଚିନ୍ତାଧାରାକୁ ହୃଦୟଙ୍ଗମ କରିବା ତାଙ୍କପକ୍ଷେ ସହଜହେବ ।

ଆଦ୍ୟ ସ୍ତରରେ ଅଜଣା ଶବ୍ଦ, ସଙ୍କେତ ଓ ବଚନିକା ଆଦି ଯୋଗୁ ମଧ୍ୟ ବିଷୟବସ୍ତୁକୁ ବୁଝିବା କଷ୍ଟକର ହୋଇଥାଏ । ଏକ୍ଷେତ୍ରରେ ପୃଷ୍ଠାତଳେଥିବା ସ୍ପଷ୍ଟୀକରଣ, ପୁସ୍ତକଶେଷରେ ଥିବା ଟିପ୍‌ପଣୀ ଏବଂ ଅଭିଧାନ ଓ ଜ୍ଞାନକୋଷ ଆଦିର ସାହାଯ୍ୟ ନିଆଯିବା ଆବଶ୍ୟକ । ଅଧ୍ୟୟନ କଲାବେଳେ ଅଜଣା ଶବ୍ଦ କି ବଚନିକା କି ସଙ୍କେତ ଆଦି ଦେଖିଲେ ତାକୁ ଡେଇଁ ପଡ଼ିଯିବା ଠିକ ହେବନାହିଁ କାରଣ ତଦ୍ୱାରା ବିଷୟବସ୍ତୁ ବହନ କରିଥିବା ଚିନ୍ତାଧାରା ବା ତତ୍ତ୍ୱ ପାଠକ ପାଖରେ ବିକୃତ ହୋଇରହିଯିବାର ଆଶଙ୍କା ରହିଛି ।

ମାର୍କସ୍ ଏଙ୍ଗେଲସ, ଲେନିନଙ୍କ ଦ୍ୱାରା ପ୍ରଣୀତ ମୂଳଗ୍ରନ୍ଥମାନ ପଢ଼ିଲା-ବେଳେ ଅନେକ ସମୟରେ ପାଠକ ଦେଖିବେ ଯେ ପୁସ୍ତକଗୁଡ଼ିକର ବିଷୟ-ବସ୍ତୁର ସାରବତ୍ତା ତାଙ୍କ ପାଖରେ ଦୁର୍ବୋଧ ଅଟେ । ଏ କ୍ଷେତ୍ରରେ ବିଧେୟ ହେଉଛି ପ୍ରଥମେ ସେହି ବିଷୟରେ ସ୍ୱତନ୍ତ୍ରଭାବେ ଲିଖିତ ଶିକ୍ଷାମୂଳକ ପୁସ୍ତକମାନ ଅଧ୍ୟୟନ କରିବା ଓ ପରେ ମୂଳଗ୍ରନ୍ଥ ଅଧ୍ୟୟନରେ ପ୍ରବୃତ୍ତ ହେବା ।

ଫଳପ୍ରସୂ କାର୍ଯ୍ୟପାଇଁ ଯେଉଁ ଅଭିନିବେଶ ପ୍ରୟୋଜନ ତାହାର ଅଭାବରେ ପ୍ରଥମେ କେତେଗୁଡ଼ିଏ ଅସୁବିଧା ମଧ୍ୟ ଦେଖାଯାଇଥାଏ । ଏହି ଫଳରେ ପାଠକ ମୁଖ୍ୟ ଚିନ୍ତାଧାରା ଓ ତତ୍ତ୍ୱଗୁଡ଼ିକର କୂଳକିନାରା ପାଆନ୍ତି ନାହିଁ, ବକ୍ତବ୍ୟଗୁଡ଼ିକର ଯଥାର୍ଥତାକୁ ଧରିପାରନ୍ତି ନାହିଁ ଓ ପରିଶେଷରେ ସମଗ୍ର ବିଷୟ ବସ୍ତୁଟିକୁ ଆୟତ୍ତ କରିବାରେ ବିଫଳ ହୁଅନ୍ତି । ଏଭଳି ଅବସ୍ଥାଥିଲେ ପାଠକ ନିଜେ ନିଜେ ଉପକୃତ ହୋଇପାରିବେ ନାହିଁ, ବରଂ ସମୟର ଅପଚୟ ହେବାହିଁ ସାରହେବ ।

ଅସୁବିଧା ପଡ଼ିଲେ ଭୟକରିବାର କିଛି କାରଣ ନାହିଁ । ମାର୍କସ୍ ଏବଂ ଏଙ୍ଗେଲସଙ୍କ ଗ୍ରନ୍ଥଗୁଡ଼ିକ ଅଧ୍ୟୟନ କରିବା ବିଷୟରେ ଲେନିନ କହିଥିଲେ ପ୍ରଥମ ପାଠରେ ଯାହା ଅସ୍ପଷ୍ଟ ରହିବ ଦ୍ୱିତୀୟବାର ପଠନରେ ତାହା ସ୍ପଷ୍ଟ ହୋଇଯିବ ବା ଆଉଗୋଟିଏ ଦୃଷ୍ଟିକୋଣରୁ ସେହି ବିଷୟଟିର ସମ୍ମୁଖୀନ ହେଲେ ତାହା ସ୍ପଷ୍ଟ ହୋଇଯିବ ।" (ଭି. ଆଇ. ଲେନିନ୍, ରଚନାବଳୀ, ୨୯ଶ ଖଣ୍ଡ, ପୃ : ୪୭୨) ।

ଗୋଟିଏ ମୂଳଗ୍ରନ୍ଥ ଅଧ୍ୟୟନ କରିବା ପୂର୍ବରୁ ପାଠକଙ୍କୁ କେତୋଟି ସର୍ବ-ନିମ୍ନ କର୍ତ୍ତବ୍ୟ ସ୍ଥିର କରିବାକୁ ପଡ଼ିବ । ପ୍ରଥମେ ପୁସ୍ତକରେ ସନ୍ନିବେଶିତ ତାତ୍ତ୍ୱିକ

ସମସ୍ୟା ଗୁଡ଼ିକର ଓ ଅବଧାରଣାଗୁଡ଼ିକର ଆଧେୟଗୁଡ଼ିକୁ ହୃଦୟଙ୍ଗମ କରିବାକୁ ହେବ ଏବଂ ସେଥିସହିତ ବୈଜ୍ଞାନିକ ବା ସାମାଜିକ ବା ରାଜନୈତିକ ତଥ୍ୟାବଳୀକୁ ଆୟତ୍ତ କରିବାକୁ ହେବ । ଦ୍ୱିତୀୟରେ ଯଦି ପୁସ୍ତକ ଯେଉଁ ଐତିହାସିକ, ରାଜନୈତିକ, ସାମାଜିକ ଓ ମତାଦର୍ଶଗତ ପରିସରରେ ଲିଖିତ ସେ ବିଷୟରେ ସ୍ପଷ୍ଟତା ହାସଲ କରିବାକୁ ହେବ । ତୃତୀୟରେ ମତାଦର୍ଶଗତ ଶତ୍ରୁମାନଙ୍କ ବିରୁଦ୍ଧରେ ଚାଲିଥିବା ସଂଗ୍ରାମରେ କେଉଁ କେଉଁ, ଜରୁରୀ କର୍ତ୍ତବ୍ୟଗୁଡ଼ିକ ଓ ସମସ୍ୟାଗୁଡ଼ିକ ପୁସ୍ତକରେ ଅବତାରଣା କରାଯାଇଛି, ପୁଞ୍ଜିବାଦୀ ମତାଦର୍ଶ ଏବଂ ପେଟି–ବୁର୍ଜୁଆ ମନସ୍ତତ୍ତ୍ୱକୁ ପ୍ରତିହତ କରିବାରେ ପୁସ୍ତକଟି କେତେଦୂର ସକ୍ଷମ ହୋଇଛି ଏବଂ ପାର୍ଟିର ତାତ୍ତ୍ୱିକ ତଥା ବାସ୍ତବ କର୍ମତତ୍ପରତାରେ ଏହାର ଭୂମିକା ଓ ବୈଶିଷ୍ଟ୍ୟ କ'ଣ ଏହା ବାହାର କରିବାକୁ ହେବ ।

ମାର୍କସ୍‌ବାଦ—ଲେନିନବାଦର ଚିରସ୍ମୃତ ଗ୍ରନ୍ଥହେଉ ବା ଅଧୁନାତନ ବୈଜ୍ଞାନିକ, ସାମାଜିକ, ରାଜନୈତିକ ସାହିତ୍ୟ ହେଉ, ସେସବୁଗୁଡ଼ିକର ଅଧ୍ୟୟନ ଲବ୍ଧଜ୍ଞାନକୁ ନିଜର ପୂର୍ବଲବ୍ଧ ଜ୍ଞାନ ସହିତ ତୁଳନାକଲେ ସେଭଳି ଅଧ୍ୟୟନ ବିଶେଷ ଫଳପ୍ରଦ ହେବ । ଏଭଳି ତୁଳନା ବେଳେବେଳେ ଆପଣା ଛାଏଁ ହୋଇଯାଇଥାଏ । କିନ୍ତୁ ଏଭଳି ଅନୈଚ୍ଛିକ ତୁଳନା ଉପରେ ନିର୍ଭର ନକରି ପୁସ୍ତକ ଲବ୍ଧଜ୍ଞାନକୁ ପୂର୍ବଲବ୍ଧ ଜ୍ଞାନ ସହିତ ତୁଳନା କରିବାର ଏକ ସଚେତନ ଅଭ୍ୟାସ କରିବା ଅଧିକ ଉପଯୋଗୀ ହେବ । ଏଭଳି କଲେ ବିଷୟବସ୍ତୁଟିକୁ ପରିପୂର୍ଣ୍ଣଭାବେ ଉପଲବ୍ଧି କରିବା ଓ ନୂତନ ଜ୍ଞାନକୁ ଅବିଳମ୍ବେ ନିଜସ୍ୱ କରିବା ଅପେକ୍ଷାକୃତ ସହଜ ହେବ ।

ମାର୍କସବାଦ—ଲେନିନବାଦର ଚିରସ୍ମୃତ ଗ୍ରନ୍ଥଗୁଡ଼ିକୁ ବିଶଦ୍‌ଭାବେ ଅଧ୍ୟୟନ କରିବାପାଇଁ ସମୟ ଓ ମାନସିକ ଶ୍ରମ ଲୋଡ଼ା । ଏଣୁ ଏଗୁଡ଼ିକୁ ଅନେକବେଳେ ମଝିରେ ମଝିରେ ବାରମ୍ବାର ଆବଶ୍ୟକତା ରହିଛି । ତା'ହେଲେ ଯାହା ପଢ଼ାଗଲା ସେଗୁଡ଼ିକୁ ବିଶ୍ଳେଷଣ କରିବା ଓ ନିଜର ପୂର୍ବଲବ୍ଧ ଜ୍ଞାନସହିତ ତୁଳନା କରିବା ପାଇଁ ସୁଯୋଗ ମିଳିବ । ଏଭଳି ବାରମ୍ବାର ପଠିତ ବିଷୟବସ୍ତୁକୁ ସମୀକ୍ଷା କରିବା ପାଇଁ ଏବଂ ସେଥିପ୍ରତି ନିଜର ଦୃଷ୍ଟିଭଙ୍ଗୀକୁ ପରୀକ୍ଷା କରିବା ପାଇଁ ସୁବିଧା ଦେବ ।

ସମସ୍ତ ବିଷୟବସ୍ତୁ ସମ୍ବନ୍ଧରେ ପୁରାପୁରିଭାବେ ଏକ ଧାରଣା ଲାଭକରିବା ଏବଂ ତତ୍‌ସମ୍ବନ୍ଧିତ ବିଭିନ୍ନ ଚିନ୍ତାଧାରା ନିର୍ଦ୍ଧାରଣଗୁଡ଼ିକ ମଧ୍ୟରେ ରହିଥିବା ସମ୍ବନ୍ଧକୁ ଅବହିତ ହେବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଅଟେ । ଗୋଟିଏ ଅନୁଚ୍ଛେଦ କି ପରିଚ୍ଛେଦ ପଢ଼ିସାରି କି ସମଗ୍ର ପୁସ୍ତକଟିକୁ ପଢ଼ିସାରି କେତୋଟି ଯୁକ୍ତିଯୁକ୍ତ ପ୍ରଶ୍ନ ପଚାରିବା ଫଳପ୍ରଦ ହେବ । ବହିଟି କେଉଁ ବିଷୟରେ ଲେଖାଯାଇଅଛି ? ଏଥିରେ କେଉଁ କେଉଁ ପ୍ରଶ୍ନର

ସ୍ପଷ୍ଟୀକରଣ ଦିଆଯାଇଅଛି ? ପ୍ରଶ୍ନଗୁଡ଼ିକର କିଭଳି ସମାଧାନ କରାଯାଇଅଛି ? କିପରି ପ୍ରତିପାଦନ ଓ ପ୍ରତିଷ୍ଠା କରାଯାଇଅଛି ? ନିଜର ମନରେ ଉଠିଥିବା କେଉଁ ପ୍ରଶ୍ନର ଉତ୍ତର ଏଥିରୁ ମିଳିଅଛି ? କେଉଁ କେଉଁ ପ୍ରଶ୍ନ ଅବୋଧ ଓ ଅସ୍ପଷ୍ଟ ରହିଗଲା କେଉଁ ଚିନ୍ତାଧାରା ବା ତତ୍ତ୍ୱ ଆଜିପାଇଁ ପ୍ରାସଙ୍ଗିକ ଅଟେ ?

ଏଭଳି ବିଶ୍ଳେଷଣ କଲେ ପାଠକ ମନରେ ସ୍ୱତଃ ନୂଆ ନୂଆ ଚିନ୍ତାଧାରା ଓ ଭାବନାର ଉଦ୍ରେକ ଘଟିବ, ଯାହାକି ସ୍ୱାଧୀନଭାବରେ ଚିନ୍ତା କରିପାରିବାର ଶକ୍ତିକୁ ବିକଶିତ କରାଇବ ।

ପାଠକ ହାସଲ କରିଥିବା ଜ୍ଞାନ କେତେ ଗଭୀର ଓ ବଳିଷ୍ଠ, ଅଧ୍ୟୟନ କେତେ ଫଳପ୍ରଦ ତାହା ବହୁପରିମାଣରେ ନିର୍ଭର କରେ ପାଠକର ମାନସିକ ଅବସ୍ଥା ଉପରେ, ସେ ଆହରଣ କରୁଥିବା ତଥ୍ୟଗୁଡ଼ିକ ତାଙ୍କ ମାନସ ଜଗତରେ କିଭଳି ପ୍ରତିକ୍ରିୟା ସୃଷ୍ଟି କରୁଛି ତାହାରି ଉପରେ । ଯଦି ଶିକ୍ଷାଲାଭ କରିବାକୁ ନଚାହେଁ ତାହେଲେ ଯେତେ ଉପଦେଶ ଦେଲେ ମଧ୍ୟ ଲାଭ ହେବନାହିଁ । ଅଧ୍ୟୟନ ପ୍ରତି ଶ୍ରଦ୍ଧା, ନିଜର ସାଂସ୍କୃତିକ ସ୍ତରକୁ ଉନ୍ନତ କରିବା ଏବଂ ରାଜନୈତିକ ଦୃଷ୍ଟିକୋଣକୁ ପ୍ରଶସ୍ତ କରିବାର ଅଭିଳାଷ ହିଁ ପୁସ୍ତକ ଅଧ୍ୟୟନ ପ୍ରତି ଅଭିନିବେଶ ଓ ମନଯୋଗ ସୃଷ୍ଟି କରିଥାଏ ।

ସାମାଜିକ, ରାଜନୈତିକ ବୈଜ୍ଞାନିକ ବିଷୟବସ୍ତୁ ସମ୍ବଳିତ ଗଣିଷ୍ଠ ସାହିତ୍ୟ ଅଧ୍ୟୟନ କରିବା ଏକ ବାସ୍ତବ ଆବଶ୍ୟକତା, ନୂଆ ସମାଜର ପ୍ରତ୍ୟେକ ବ୍ୟକ୍ତିର ଏକ ମୌଳିକ ଗୁହିଦା । ପୁସ୍ତକ ଅଧ୍ୟୟନ ପ୍ରତି ଶ୍ରଦ୍ଧା ନଥିଲେ, ପ୍ରତ୍ୟହ କିଛି କିଛି ଅଧ୍ୟୟନ କରିବାର ସ୍ପୃହା ନଥିଲେ, ମାର୍କସବାଦ-ଲେନିନବାଦର ପ୍ରଣୀତାମାନଙ୍କର 'ପରାମର୍ଶ' ପାଇବାର ଅଭିଳାଷ ନଥିଲେ, ପାର୍ଟିର ସମଷ୍ଟିଗତ ବିଜ୍ଞତା ଓ ଅଭିଜ୍ଞତାରେ ଭାଗୀଦାର ହେବାର ଆଗ୍ରହ ନଥିଲେ, ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ଐତିହାସିକ ଅଭିଜ୍ଞତା ସମ୍ପର୍କରେ ଜ୍ଞାନ ନଥିଲେ କେହି କେବେ ଜଣେ ପଣ୍ଡିତ ବ୍ୟକ୍ତି ବା ଜଣେ ଦକ୍ଷ ବିଶେଷଜ୍ଞ ହୋଇପାରିବେ ନାହିଁ ।

## (୩) ଅଧ୍ୟୟନାଧୀନ ବିଷୟବସ୍ତୁ ସମ୍ପର୍କରେ ଟିପ୍ପଣୀ

ନିଜ ଉଦ୍ୟମରେ ପୁସ୍ତକ ଅଧ୍ୟୟନ କରିବାର ଗୋଟିଏ ଫଳପ୍ରଦ ମାର୍ଗ ହେଉଛି ଯାହା ଅଧ୍ୟୟନ କଲ, ତାହାର ଟିପ୍ପଣୀ ରଖିବା । ସଂକ୍ଷିପ୍ତ ଟିପ୍ପଣୀ ରଖିଲାବେଳେ ଜଣେ ବିଷୟବସ୍ତୁ ଭିତରେ ଗଭୀରଭାବେ ପ୍ରବେଶ କରିବାକୁ ଓ ତା'ର ସାରକଥାଗୁଡ଼ିକୁ ସନ୍ଧାନ କରିବାକୁ ବାଧ୍ୟ ହେବ । ଅତଏବ ସେ ଯାହା

ପଢ଼ିଲେ ସେତକ ପୁଙ୍ଖାନୁପୁଙ୍ଖଭାବେ ଆତ୍ମସ୍ଥ କରିବା ଓ ବାକ୍ୟମୂଳ କରି ରଖିବା ସମ୍ଭବ ହେବ । ଟିପ୍ପଣୀ ରଖିବା ଅଭ୍ୟାସ ଦ୍ୱାରା ଶିକ୍ଷାର୍ଥୀଙ୍କର ଅଭିନିବେଶ ବୃଦ୍ଧି ପାଏ, ନିଜର ଚିନ୍ତାଧାରାକୁ ରୂପ ଦେବାର ଯୋଗ୍ୟତା ବିକାଶଲାଭ କରେ, ଭାଷା ଓ ବାକ୍‌ଶକ୍ତି ପ୍ରାଞ୍ଜଳ ହୁଏ ।

ଟିପ୍ପଣୀଗୁଡ଼ିକରେ ପଠନ ପ୍ରକ୍ରିୟା ଚୂଡ଼ାନ୍ତ ହୁଏ ଓ ପୁସ୍ତକର ସମଗ୍ର ଅଧ୍ୟୟନ ଲିପିବଦ୍ଧ ହୋଇ ରହେ । ଟିପ୍ପଣୀ ରଖିବା ଅଭ୍ୟାସ ପଠିତ ବସ୍ତୁକୁ ପାଠକ ମନରେ ମୁଦ୍ରିତ କରି ରଖେ । ଉତ୍ତମ ଟିପ୍ପଣୀ ଦ୍ୱାରା ପଠିତ ବିଷୟ-ବସ୍ତୁ ସହଜରେ ସ୍ମୃତିପଟରେ ଜାଗ୍ରତ ହୁଏ ଓ ଭବିଷ୍ୟତ ପାଇଁ ମଧ୍ୟ ସାହାଯ୍ୟ-କାରୀ ହୋଇଥାଏ ।

କେଉଁ ପୁସ୍ତକ ପାଇଁ କି ପ୍ରକାର ଟିପ୍ପଣୀ ରଖାଯିବ ତାହା ପଠନର ଲକ୍ଷ୍ୟ ଓ ପୁସ୍ତକର ବୈଶିଷ୍ଟ୍ୟ ଉପରେ ନିର୍ଭର କରେ । ପୁସ୍ତକଟି ଯଦି ଜଟିଳ ନୁହେଁ ଏବଂ ସହଜରେ ବୋଧଗମ୍ୟ ହୋଇଥାଏ ତା'ହେଲେ କେବଳ ପୁସ୍ତକର ଯୋଜନାଟିକୁ ଲିପିବଦ୍ଧ କଲେ ଯଥେଷ୍ଟ ହେବ ।

ପଠିତ ବିଷୟବସ୍ତୁର ଯୋଜନା ତିଆରି କରିବାରେ ପୁସ୍ତକରେ ଅବ-ତାରଣା କରାଯାଇଥିବା ପ୍ରଶ୍ନଗୁଡ଼ିକର ପରିସର ସଶ୍ଳିଷ୍ଟ ଅଟେ । ସେଥି ସହିତ ସେଗୁଡ଼ିକ ଭିତରେ ଯୁକ୍ତିଯୁକ୍ତ ସମ୍ପର୍କ ପ୍ରତିଷ୍ଠା କରିବା ଏବଂ ପ୍ରଦତ୍ତ ତଥ୍ୟକୁ ଏକ ବିଧିବଦ୍ଧ ଧାରାରେ ସଙ୍ଗଠିତ କରିବା ମଧ୍ୟ ଜଡ଼ିତ । ପୁଣି ବିଷୟବସ୍ତୁର ବିଶ୍ଳେଷଣ ତା'ର ଅବିଚ୍ଛେଦ୍ୟ ଅଂଶଗୁଡ଼ିକର ସୂଚନା ଏବଂ ପ୍ରତ୍ୟେକ ବିଭାଗ ପାଇଁ ଗୋଟିଏ ଶିରୋନାମା ରଚନା ଏହି ଯୋଜନା ଅନ୍ତର୍ଭୁକ୍ତ ।

ଗୋଟିଏ କାର୍ଯ୍ୟର ଯୋଜନା ଯୁକ୍ତିଯୁକ୍ତ କ୍ରମରେ ତନ୍ମଧ୍ୟରେ ବିସ୍ଥାନ କରାଯାଇଥିବା ପ୍ରଶ୍ନଗୁଡ଼ିକୁ ମଧ୍ୟ ପ୍ରତିଫଳନ କରିପାରେ । କିନ୍ତୁ ପୁନରାବୃତ୍ତି କରାଯାଇଥିବା ସମସ୍ୟାଗୁଡ଼ିକୁ ଏକତ୍ର କରି ଏବଂ ବିଭିନ୍ନ ଅଂଶକୁ ପୁନର୍ବିନ୍ୟାସ କରି ଏହା ବିଷୟବସ୍ତୁକୁ ପୁନଃସଂଗଠିତ ମଧ୍ୟ କରିପାରେ । ପ୍ରଥମ କ୍ଷେତ୍ରରେ ଯୋଜନାର ରଚନା ହୋଇଥାଏ ଅଧ୍ୟୟନ କାଳରେ ଏବଂ ଦ୍ୱିତୀୟ କ୍ଷେତ୍ରରେ ଅଧ୍ୟୟନ ପରେ । ଦ୍ୱିତୀୟ ଯୋଜନାଟି ଅଧ୍ୟୟନାଧୀନ ସମସ୍ୟା ସହିତ ସଙ୍ଗତି ରଖି ବିଷୟବସ୍ତୁଟିକୁ ଏକ ଧାରାରେ ପକାଏ ।

ଯୋଜନାଟି ସରଳ ହୋଇପାରେ, ଜଟିଳ ହୋଇପାରେ ଏବଂ ମିଶ୍ରିତ ବି ହୋଇପାରେ ।

ଗୋଟିଏ ସରଳ ଯୋଜନା ରଚନା କଲାବେଳେ ପଠନାଧୀନ ବିଷୟ-ବସ୍ତୁକୁ ଯଥାଯଥ ବିଭାଗ, ଉପବିଭାଗ, ଶିରୋନାମା ଏବଂ ଉପଶିରୋନାମାରେ ବିଭକ୍ତ କରାଯାଇଥାଏ । ଏହି ଶିରୋନାଗୁଡ଼ିକ ସୂଚନାତ୍ମକ, ପ୍ରଶ୍ନବାଚକ ବା ବ୍ୟାଖ୍ୟାମୂଳକ ବାକ୍ୟରେ ହୋଇପାରେ । ପାଠକ ତା' ନିଜ ଭାଷାରେ ଶିରୋ-ନାମା କି ଉପଶିରୋନାମା ନଦେଇ ପଠନାଧୀନ ବିଭାଗରେ ଯେଉଁ ଅର୍ଥବ୍ୟଞ୍ଜକ ଲେଖକଙ୍କ ନିଜସ୍ୱ ବାକ୍ୟଟିଏ ମଧ୍ୟ ବ୍ୟବହାର କରିପାରନ୍ତି ।

ଜଟିଳ ଯୋଜନାରେ ସରଳ ଯୋଜନା ଅନ୍ତର୍ଗତ ମୁଖ୍ୟବସ୍ତୁ ବାପ୍ରଶ୍ନଗୁଡ଼ିକ ଉପରେ ଅତିରିକ୍ତ ବ୍ୟାଖ୍ୟା ରହିଥାଏ । ଜଟିଳ ଯୋଜନା ତିଆରି କଲାବେଳେ ବିଷୟବସ୍ତୁକୁ କେବଳ ବିଭାଗ ଓ ଉପବିଭାଗରେ ବିଭକ୍ତ କରାଯାଏ ନାହିଁ, ସେଥିସହିତ ଆନୁସଙ୍ଗିକ ବିଭାଗ ମଧ୍ୟ ସଂଯୋଗ କରାଯାଏ ଓ ସେଗୁଡ଼ିକୁ ପୁଣି ବିଶଦଭାବରେ ବ୍ୟାଖ୍ୟା କରାଯାଏ ।

ମିଶ୍ରିତ ଯୋଜନା ସଂଯୁକ୍ତ କରେ ଉଭୟ ସରଳ ଓ ଜଟିଳ ଯୋଜନାର ଆଙ୍ଗିକକୁ । ଏହା ଅସ୍ତିବାଚକ, ପ୍ରଶ୍ନବାଚକ ଓ ସମ୍ବୋଧନବାଚକ ବାକ୍ୟଗୁଡ଼ିକୁ ନେଇ ରଚିତ ହୁଏ । ପ୍ରତ୍ୟେକ ବାକ୍ୟ ଆନୁଷଙ୍ଗିକ ପ୍ରଶ୍ନମାନଙ୍କ ଦ୍ୱାରା ଅନୁସୃତ ହୋଇଥାନ୍ତି ।

ଗୋଟିଏ ସୁରଚିତ ଯୋଜନା ବିଷୟବସ୍ତୁକୁ ସମ୍ୟକ ରୂପେ ଅଧ୍ୟୟନ କରିବାରେ ସାହାଯ୍ୟ କରିଥାଏ । ବିଷୟବସ୍ତୁର ନିର୍ଯ୍ୟାସ ଭିତରେ ପ୍ରବେଶ କରିବା ବିଭିନ୍ନ ବିଭାଗର ପରିପ୍ରେକ୍ଷଣକ୍ରମକୁ ପ୍ରତିଷ୍ଠିତ କରିବା, ଗୋଟିଏ ବିଭାଗର ଅପର ସହିତ ରହିଥିବା ସମ୍ପର୍କ ସାବ୍ୟସ୍ତ କରିବା ଏବଂ ପରିଣତ ସ୍ୱରୂପ ବିଷୟବସ୍ତୁକୁ ହୃଦୟଙ୍ଗମ କରିବା ଦିଗରେ ଏପରି ଯୋଜନା ସାହାଯ୍ୟକାରୀ ହୋଇଥାଏ ।

ଗୋଟିଏ ପୁସ୍ତକ ଅଧ୍ୟୟନ ଓ ବିଶ୍ଳେଷଣ କଲା ପରେ ଗୁଡ଼ିଏ ଅଲଗା କାଗଜରେ ପୁସ୍ତକରେ ଆଲୋଚିତ ଗୁରୁତ୍ୱପୂର୍ଣ୍ଣ ତଥ୍ୟରୁ ଅଂଶବିଶେଷ ଉଦ୍ଧାର କରିବା ବିଧେୟ । ଯୋଜନା କରାଯାଉ କି ନଯାଉ ଅଂଶବିଶେଷ ଉଦ୍ଧାର କରାଯିବାରେ ତାହା ବାଧା ଦେବାର କାରଣ ନାହିଁ । କିନ୍ତୁ ଅଧ୍ୟୟନ କରାଯାଉ-ଥିବା ବସ୍ତୁ ଯଦି ଅତି ଦୁଃସାଧ୍ୟ ଓ ଗଭୀର ଅଧ୍ୟୟନ ସାପେକ୍ଷ ତାହାହେଲେ ଅଂଶ ଉଦ୍ଧାର କାର୍ଯ୍ୟ ଓ ଯୋଜନା ପ୍ରଣୟନ ଏକ ସଙ୍ଗେ କରାଯିବା ଉଚିତ ବା ଯୋଜନା ପ୍ରଣୟନ ପରେ ତାହା କରାଯିବା ଉଚିତ । ବିଷୟବସ୍ତୁ ଆନୁସଙ୍ଗିକ ଗୁରୁତ୍ୱ ବିଶିଷ୍ଟ ହୋଇଥିଲେ ଆଗ୍ରହୋଦ୍ଦୀପକ ଚିନ୍ତାଧାରା, ଯୁକ୍ତି, ମନ୍ତବ୍ୟ ଓ ନିର୍ଦ୍ଧାରଣମାନ ପଠନ ସମୟରେ ନକଲ କରି ରଖାଯାଇ ପାରେ ।

କେବଳ ନିର୍ଯ୍ୟାସଟିକୁ, ଅର୍ଥାତ ପ୍ରମୁଖ ତାତ୍ତ୍ୱିକ ସିଦ୍ଧାନ୍ତ, ମୌଳିକ ଅବଧାରଣା, ମୂଳନୀତି, ମାର୍କସବାଦ-ଲେନିନବାଦ ବିଜ୍ଞାନର ନିୟମ, ତାତ୍ତ୍ୱିକ ନୀତିକୁ କାର୍ଯ୍ୟ ସହିତ ସଂଯୁକ୍ତ କଲଭଳି ତଥ୍ୟମୂଳକ ଅବତାରଣା ନକଲ କରି ରଖିବା ପ୍ରୟୋଜନ । ପୁଞ୍ଜିବାଦୀ ଅବଧାରଣାର ସମାଲୋଚନା ଓ ଆଜିକର ମତାଦର୍ଶଗତ ସଂଗ୍ରାମ ଅନ୍ତର୍ଗତ ସମସ୍ୟାର ଆଲୋଚନା ରହିଥିବା ଅଂଶବିଶେଷର ଉଦ୍ଧୃତି ଅତ୍ୟନ୍ତ ମୂଲ୍ୟବାନ । ପଠିତ ବିଷୟବସ୍ତୁର ଯୋଜନା ସାଙ୍ଗକୁ ଉଦ୍ଧୃତି କାର୍ଯ୍ୟ ଏକ ଉପଯୋଗୀ ଅଭ୍ୟାସ ଅଟେ । ଏତଦ୍ୱାରା ଯୋଜନାର ପ୍ରତିପାଦନ, ସ୍ପଷ୍ଟୀକରଣ ଓ ଚୟନ ହୋଇଥାଏ । କୌଣସି ଏକ ସାରଗର୍ଭକ ତଥ୍ୟର ସ୍ୱକୀୟ ଭାଷାରେ ଯଥାର୍ଥ ଲିଖନ କରିଆରେ ବା ଅବିକଳ ନକଲ କରିଅରେ ଉଦ୍ଧୃତି କାର୍ଯ୍ୟ କରାଯାଇପାରେ ।

ଅବିକଳ ଅବତାରଣା ହେଉଛି ପଠିତ ବସ୍ତୁର ନିର୍ଦ୍ଦିଷ୍ଟ ଅଂଶର ଅବିକଳ ନକଲ । ଏହା କଲାବେଳେ ଉଦ୍ଧୃତି ଚିହ୍ନ ଦେଇ କରିବାକୁ ହେବ । ଏବଂ କେଉଁଠାରୁ ଅବତାରଣା କରାଯାଇଛି ତାହା ଲେଖିବାକୁ ହେବ । ପୁଣି ଲେଖକଙ୍କ ନାମ, ପ୍ରକାଶକଙ୍କ ନାମ, ପ୍ରକାଶନ ସ୍ଥାନ ଓ ସମୟ, ପୁସ୍ତକର ପୃଷ୍ଠା ଇତ୍ୟାଦି ଏ କ୍ଷେତ୍ରରେ ସୂଚାଇବା ନିୟମ । ଯଦି ସେହି ପୃଷ୍ଠାରୁ ୨ୟ ଥର ଅବତାରଣା କରିବାକୁ ପଡ଼େ ତାହାହେଲେ ଏଜନ ବୋଲି ଲେଖିବେ । ଯଦି ସେହି ପୁସ୍ତକ ହୋଇଥାଏ ଏବଂ ପୃଷ୍ଠା ଅନ୍ୟ ହୋଇଥାଏ ତାହାହେଲେ ଏଜନ ଲେଖି ପୃଷ୍ଠା ସଂଖ୍ୟା ଦେବେ ।

ଅବିକଳ ଅବତାରଣା ଅଂଶରେ ଅନେକ ସମୟରେ ଗୋଟିଏ ଗୋଟିଏ ଛିଦ ନଥାଏ । ସେ କ୍ଷେତ୍ରରେ ୩।୪ଟି ବିନ୍ଦୁ ଦେବାକୁ ହେବ । ନିୟମ, ସୂତ୍ର, ଆପ୍ତବାକ୍ୟ ଆଦିର ଅବିକଳ ଅବତାରଣା କଲାବେଳେ ମୂଳ କଥାର ଅବିକଳ ନକଲ ନ ହୋଇଥିଲେ ଅର୍ଥ ବିକୃତ ହେବାର ଆଶଙ୍କା ରହିଛି ।

ଉପରୋକ୍ତ ନିୟମମାନ ପାଳନ କରି ଅଂଶବିଶେଷର ଉଦ୍ଧାର ବା ଅବିକଳ ଅବତାରଣା କଲେ ମାର୍କସବାଦ ଲେନିନବାଦର ଅଧ୍ୟୟନ ତଥା ଅଭ୍ୟାସ କର୍ମ ପାଇଁ ମୂଲ୍ୟବାନ ବିଷୟବସ୍ତୁ ମିଳିବ ।

ପଠିତ ବିଷୟବସ୍ତୁ ଉପରେ ଟିପ୍ପଣୀ ରଖିବାରେ ସାରାଂଶ ଲିଖନ ପ୍ରାୟ ସର୍ବତ୍ର ଆଚରିତ ହୋଇଥାଏ । ବିଷୟବସ୍ତୁର ଏହା ଏକ ସଂକ୍ଷିପ୍ତ ରୂପରେଖ । ପାଠକ ବିଷୟବସ୍ତୁକୁ କେତେ ପରିମାଣରେ ହୃଦୟଙ୍ଗମ କରିଛନ୍ତି ଏବଂ ତାକୁ ବ୍ୟବହାର କରିବା ପାଇଁ ତାଙ୍କର କେତେ ଦକ୍ଷତା ରହିଛି ତାହା ସାରାଂଶ ଲିଖନରୁ ଜଣାପଡ଼ିଥାଏ ।

ବିଷୟବସ୍ତୁ ଅଧ୍ୟୟନ କରିବାର ସମଗ୍ର ପ୍ରୟାସଟି ସାରାଂଶ ଲିଖନରେ ସମାପ୍ତ ହୋଇଥାଏ । ସାରାଂଶ କଲାବେଳେ ଅଧିକ ବସ୍ତୁର ମର୍ମାର୍ଥ, ତତ୍ତ୍ୱଗତ ଯୁକ୍ତିର ଗଠନ ଓ ଭିତ୍ତିଭୂମି, ଯୁକ୍ତିର ଅଭୀଷ୍ଟ ସିଦ୍ଧାନ୍ତ, ବୈଜ୍ଞାନିକ ଉଦ୍ଭାବନ ପାଇଁ ଓ ବାସ୍ତବ କାର୍ଯ୍ୟ ପାଇଁ ସେ ସିଦ୍ଧାନ୍ତର ଉପଯୋଗିତା ଆଦି ନିର୍ଣ୍ଣୟ କରିବା ଉଚିତ୍ । କହିବା ନିଷ୍ପ୍ରୟୋଜନ ଯେ ବିଷୟବସ୍ତୁର ଗଭୀର ଅଧ୍ୟୟନ ଏବଂ ସୃଜନାତ୍ମକ ହୃଦୟାନୁଭବ ଦ୍ୱାରା ସଦ୍ୟ ଆହୃତ ଜ୍ଞାନ ନିଜର ଅତୁଟ ବିଶ୍ୱାସ ଓ ହୃଦ୍‌ବୋଧରେ ପରିଣତ ହୁଏ । ସେହି କାରଣରୁ ମୂଳଗ୍ରନ୍ଥାବଳୀ ଓ ବୈଜ୍ଞାନିକ ସାମାଜିକ ଏବଂ ରାଜନୈତିକ ସାହିତ୍ୟର ସାରାଂଶ ଲିଖନ କେବଳ ଟିପ୍ପଣୀ ରଖିବା କାର୍ଯ୍ୟ ନୁହେଁ, ଅଧ୍ୟୟନ କରିବାର ଏକ ପଦ୍ଧତି ଅଟେ ।

ଦାର୍ଶନିକ ଟିପ୍ପଣୀ ନାମକ ଲେନିନ ଯେଉଁ ସାରାଂଶ ଲିଖନ ରଖି ଯାଇଛନ୍ତି, ତାହା ଯଥାର୍ଥ୍ୟ ପ୍ରତିପାଦନ ଓ ସୁଯୁକ୍ତ ସମ୍ମୁଖ ମନ୍ତବ୍ୟ ପ୍ରଦାନର ନୈପୁଣ୍ୟ ପାଇଁ ଏକ ଦୃଷ୍ଟାନ୍ତ ଅଟେ । ଆମେ ସେଥିରେ ବିଷୟବସ୍ତୁର ପୂର୍ବାପର ସମ୍ପର୍କଯୁକ୍ତ ଅଭିବ୍ୟକ୍ତି, ଅବିକଳ ଅବତାରଣା ଓ ତତ୍ତ୍ୱର ସୂଚନା ସାଙ୍ଗକୁ ତାହାର ମୂଲ୍ୟାୟନ ମଧ୍ୟ ଦେଖିବାକୁ ପାଉ । ଲେନିନ ତାଙ୍କ ଧ୍ୟାନ ଆକର୍ଷଣ କରୁଥିବା ଅଂଶ ବିଶେଷକୁ ଚିହ୍ନିତ କରିବା ପାଇଁ ଚିରାଚରିତ ସଙ୍କେତ ବ୍ୟବହାର କରିବା ସଙ୍ଗେ ସଙ୍ଗେ ନିଜସ୍ୱ ସଙ୍କେତମାନ ବ୍ୟବହାର କରୁଥିଲେ ।

ସାରାଂଶ ଲିଖନ ପାଇଁ କେତେକ କୌଶଳ ବର୍ତ୍ତମାନ ଦିଆଯାଉଛି ।

ସାରାଂଶ ଲେଖିବାକୁ ଯିବା ପୂର୍ବରୁ ବିଷୟବସ୍ତୁଟିକୁ ସଯତ୍ନେ ପଢ଼ି ତା'ର ଅର୍ଥ ଓ ମର୍ମାଭିବ୍ୟକ୍ତିକୁ ହୃଦୟଙ୍ଗମ କରିବା ଆବଶ୍ୟକ । ବିଷୟବସ୍ତୁକୁ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କର ଏବଂ ଯଥାଯଥ ବିଭାଗ ଓ ଉପ-ବିଭାଗରେ ବିଭକ୍ତ କର । ମୁଖ୍ୟ ଅବଧାରଣା ଓ ସିଦ୍ଧାନ୍ତକୁ ବାଛିଦିଅ ଏବଂ ଯୁକ୍ତି ତଥା ବ୍ୟାଖ୍ୟାକୁ ସିଦ୍ଧାନ୍ତ-ଠାରୁ ମନେ ମନେ ଅଲଗା କର । ଯେଉଁ ସମସ୍ୟା ଅଧ୍ୟୟନ କରୁଛ ବା ଯେଉଁ ଲକ୍ଷ୍ୟ ରଖି ଅଧ୍ୟୟନ କରୁଛ, ତଦନୁଯାୟୀ କେଉଁ କେଉଁ ଅଂଶ ତାତ୍ପର୍ଯ୍ୟପୂର୍ଣ୍ଣ ତାହା ପାଠ୍ୟ ପୁସ୍ତକରେ ଚିହ୍ନିତ କର ।

ସାରାଂଶ ଲିଖନ ନିର୍ଭର କରେ ତା'ର ଉଦ୍ଦେଶ୍ୟ ଓ ପାଠ୍ୟବସ୍ତୁର ପ୍ରକୃତି ଉପରେ । ସାରାଂଶ ଲିଖନ ପାଇଁ ଏହି କ୍ରମ ଅନୁସରଣ କରିବା ବିଧେୟ : (କ) ତାତ୍ତ୍ୱିକ ସିଦ୍ଧାନ୍ତ ଗୁଡ଼ିକର ଅବତାରଣା, (ଖ) ତା'ର ନିର୍ଯ୍ୟାସ ଓ ସାରବସ୍ତୁ ଉନ୍ମୋଚନ, (ଗ) ସିଦ୍ଧାନ୍ତଗୁଡ଼ିକ ସହାନ୍ତ ତଥ୍ୟମୂଳକ ବିଷୟର ଅବତାରଣା (ଘ) ତା'ର ବୈଜ୍ଞାନିକ ମୂଲ୍ୟ ଓ କାର୍ଯ୍ୟଗତ ମୂଲ୍ୟର ବିଶ୍ଳେଷଣ ।

ସାରାଂଶ ଲିଖନରେ ତାତ୍ତ୍ୱିକ ଓ ବର୍ଣ୍ଣନାତ୍ମକ ବିଷୟବସ୍ତୁର ପ୍ରକୃଷ୍ଟ ସଂଯୋଜନ ହେବା ପ୍ରୟୋଜନ । ନିୟମତଃ ତାତ୍ତ୍ୱିକ ବିଧାନ ଅଭ୍ୟାସଲବ୍ଧ ଦୃଷ୍ଟାନ୍ତ ଦ୍ୱାରା ପରିପୂର୍ଣ୍ଣ ଓ ପରିପୁଷ୍ଟ ହୋଇଥାଏ । ତାତ୍ତ୍ୱିକ ବିଷୟବସ୍ତୁର ଅଭ୍ୟାସଲବ୍ଧ ଦୃଷ୍ଟାନ୍ତ ସହିତ ଆନ୍ତଃସଂପର୍କ ସଂକ୍ଷିପ୍ତସାର କରାଯାଉଥିବା ବିଷୟବସ୍ତୁ ଉପରେ ଯେତେ ନିର୍ଭର ନ କରେ ସେତେ ନିର୍ଭର କରେ ଅଧ୍ୟୟନର ଲକ୍ଷ୍ୟ ଉପରେ । ଅଧ୍ୟୟନ ପରେ ହେବାକୁ ଥିବା ଉପଯୋଗ ଉପରେ । ଦୃଷ୍ଟାନ୍ତସ୍ୱରୂପ ସଂକ୍ଷିପ୍ତ-ସାରରେ ତାତ୍ତ୍ୱିକ ବିଷୟବସ୍ତୁ ପ୍ରାଧାନ୍ୟ ଲାଭ କରିପାରେ, ଅଥଚ ସମଗ୍ର ବିଷୟବସ୍ତୁଟି ଲେଖା ହୋଇଥିବ ଐତିହାସିକ ପୃଷ୍ଠଭୂମିରେ । ବିପରୀତ କ୍ରମେ ଗୋଟିଏ ତାତ୍ତ୍ୱିକ ରଚନାର ସାରାଂଶରେ ଐତିହାସିକ ଦୃଷ୍ଟାନ୍ତମାନ ମଧ୍ୟ ପ୍ରାଧାନ୍ୟ ଲାଭ କରିପାରେ ।

ସାରାଂଶ କଲାବେଳେ ପ୍ରାଧାନ ଲକ୍ଷ୍ୟଟି ଯେପରି ମାନସପଟରୁ ଲିଭି ନଯାଏ ତାହା ଦେଖିବାକୁ ହେବ । କେବଳ ଅଧ୍ୟୟନାଧୀନ ବିଷୟ ସହିତ ସମ୍ପୃକ୍ତ ବିଷୟ ଏଥିରେ ରହିବ; ଯେତେକ ଚିତ୍ତାକର୍ଷକ ବା ବୁଦ୍ଧିଦୀପ୍ତ ସନ୍ଦର୍ଭକ ଏଥିରେ ଅନ୍ତର୍ଭୁକ୍ତ କରିବା ଆବଶ୍ୟକ ନୁହେଁ । ସ୍ୱତନ୍ତ୍ର ଆଗ୍ରହ ସୃଷ୍ଟି କରୁଥିବା ନାନା କଥା ଅବଶ୍ୟ ଥାଇପାରେ । ସେଗୁଡ଼ିକୁ ଅଲଗା କାଗଜରେ ନକଲ କରି ରଖାଯାଇପାରେ କିମ୍ବା ପୃଷ୍ଠାର ପାର୍ଶ୍ୱସ୍ଥ ଜାଗାରେ ପେନ୍ସିଲ୍‌ରେ ଭବିଷ୍ୟତ ଉପଯୋଗ ପାଇଁ ସ୍ମାରକୀ ମନ୍ତବ୍ୟ ଟିପି ରଖାଯାଇପାରେ ।

ସାଂରାଶ ଲିଖନ ଏକ ଆୟାସସାଧ୍ୟ ଜଟିଳ କାର୍ଯ୍ୟ । କିନ୍ତୁ ମାର୍କସବାଦ-ଲେନିନବାଦ ତତ୍ତ୍ୱର ଅଧ୍ୟୟନ କରିବା ପାଇଁ, ଏ ସଂକ୍ରାନ୍ତ ମୂଳ ଗ୍ରନ୍ଥମାନ ଅଧ୍ୟୟନ କରିବା ପାଇଁ ଏବଂ ବୈଜ୍ଞାନିକ, ସାମାଜିକ ତଥା ରାଜନୈତିକ ସାହିତ୍ୟର ପର୍ଯ୍ୟାଲୋଚନା କରିବା ପାଇଁ ଏହା ଅତ୍ୟନ୍ତ ମୂଲ୍ୟବାନ । ଏହା ଶିକ୍ଷା-ଲାଭ ପ୍ରକ୍ରିୟାକୁ ପ୍ରଖର କରେ, ଯୌକ୍ତିକ ଚିନ୍ତନର ବିକାଶ ଘଟାଏ, ସ୍ତୃତ ଜଗତର କର୍ମତତ୍ପରତା ବୃଦ୍ଧି କରେ ଏବଂ ଅଭିନିବେଶ ଶକ୍ତି ସୃଷ୍ଟି କରେ । ପରିଶେଷରେ ସାରାଂଶ ଲିଖନ ମାର୍କସବାଦ-ଲେନିନବାଦର ମୌଳିକ ଉପାଦାନ ଗୁଡ଼ିକୁ ସୃଜନାତ୍ମକଭାବେ ଆୟତ୍ତ କରିବାରେ ଏବଂ ତାହାର ମୂଳ କଥାଗୁଡ଼ିକୁ ବାସ୍ତବ କାର୍ଯ୍ୟରେ ବିନିଯୋଗ କରିବାରେ ସାହାଯ୍ୟ କରିଥାଏ ।

ଉତ୍ତମ ସାରାଂଶଟିଏ ଲେଖିବା ପାଇଁ ଆଉ କେତୋଟି ବାହ୍ୟ ନିୟମ ପାଳନ କରାଯାଇଥାଏ । ପ୍ରଥମେ ଲେଖିବାକୁ ସୁବିଧା ହେବା ଭଳି କାଗଜ ପୃଷ୍ଠାର ଆକାର ହେବା ଉଚିତ । ତା'ପରେ କାଗଜ ଓସାରର ଏକ ତୃତୀୟାଂଶ ସ୍ଥାନ ବାମ ପାର୍ଶ୍ୱରେ ମାର୍ଜିନ ରଖିବାକୁ ହେବ, କାରଣ ପରେ ଟିପ୍ପଣୀ ପାଇଁ

ଏହା ପ୍ରୟୋଜନ ହୋଇପାରେ । ତା'ପରେ ଅବଶିଷ୍ଟ ଦୁଇ ତୃତୀୟାଂଶରେ ସାରାଂଶ ଲେଖ ଯିବ । ନିମ୍ନ ଫର୍ମାରେ ତାହା କରାଯାଇପାରେ ?

| ମାର୍ଜିନ୍ | ସାରାଂଶ |
|---|---|

ପ୍ରତ୍ୟେକଟି ନୂଆ ବିଷୟକୁ ଗୋଟିଏ ନୂଆ ପୃଷ୍ଠାରେ ଆରମ୍ଭ କରିବାକୁ ହେବ । ଗୋଟିଏ ଅଂଶ ବା ବିଭାଗ ଶେଷ ହୋଇଗଲେ, କି ଗୋଟିଏ ପ୍ରଶ୍ନର ବ୍ୟାଖ୍ୟାନ ସରିଗଲେ ୩।୪ ଧାଡ଼ି ସ୍ଥାନ ଛାଡ଼ି ଦେବ । ପରେ ଏହି ସ୍ଥାନରେ ନିଜର ମନ୍ତବ୍ୟ, ପ୍ରାସଙ୍ଗିକ ବିଜ୍ଞାନ-ସାହିତ୍ୟର ସୂଚନା ବା ନୂଆ ତଥ୍ୟ ଉଲ୍ଲେଖ କରାଯାଇ ପାରିବ ।

ସାରାଂଶଟିକୁ ଯଥାଯଥ ଭାବେ ବିଭାଗ ଓ ଉପବିଭାଗରେ ବିଭକ୍ତ କରାଯିବା ଉଚିତ । ପ୍ରତ୍ୟେକଟି ନୂଆ ଚିନ୍ତାଧାରା, ଅବଧାରଣା ବା ପ୍ରଶ୍ନ ଗୋଟିଏ ଗୋଟିଏ ନୂଆ ଅନୁଚ୍ଛେଦରେ ଆରମ୍ଭ କରିବାକୁ ହେବ ।

ଟିପା-ଟିପ୍ପଣୀ ଏହିଳି କରିବାକୁ ହେବ ଯେପରି ଭବିଷ୍ୟତରେ ତାହାର ଚର୍ଚ୍ଚା ସ୍ୱଚ୍ଛନ୍ଦରେ କରିହେବ । ଏଭଳି ନୈପୁଣ୍ୟ ଏକାଥରକେ ଆସିବ ନାହିଁ, ସାରାଂଶ ଲିଖନ କୌଶଳକୁ ଅଭ୍ୟସ୍ତ କରିବା ଅବସରରେ ଆସିବ ।

ଗୁରୁତ୍ୱ ଅବଧାରଣା, ତତ୍ତ୍ୱସବଳିତ ସିଦ୍ଧାନ୍ତ, ସଂଜ୍ଞା ଓ ଉପସଂହାରମାନ ରେଖାଙ୍କିତ ହେବା ଉଚିତ । କିମ୍ବା ସ୍ୱତନ୍ତ୍ର କାଳି ବା ସ୍ୱତନ୍ତ୍ର ଅକ୍ଷରରେ ଲିଖିତ ହେବା ଉଚିତ । ଧାଡ଼ିଗୁଡ଼ିକ ମଝିରେ ସ୍ଥାନ ରହିବା ବିଧେୟ, କାରଣ ସାରାଂଶ ଉପରେ ପରବର୍ତ୍ତୀ କାଳରେ ଚର୍ଚ୍ଚା କଲାବେଳେ ରେଖାଙ୍କନ ପାଇଁ ଏ ସ୍ଥାନ ପ୍ରୟୋଜନ ହୋଇପାରେ ।

ସାରାଂଶ ଲିଖନରେ ଯେଉଁ ସାଙ୍କେତିକ ଶବ୍ଦମାନ ବ୍ୟବହାର କରିବ ସେଥିପ୍ରତି ଧ୍ୟାନ ଦେବ । ଚିରାଚରିତ ସାଙ୍କେତିକ ଶବ୍ଦ ବ୍ୟବହାର କରିବା ଉଚିତ, ଯେଉଁଗୁଡ଼ିକ କି ଅଭିଧାନ ଆଦିରେ ମିଳି ପାରିବ । ନିଜେ ମଧ୍ୟ ଗୋଟିଏ ଗୋଟିଏ ଶବ୍ଦକୁ ଛୋଟେଇ (ମୂଳ ଅକ୍ଷର ଶେଷ ଅକ୍ଷର ରଖି) ନିଜର ସାଙ୍କେତିକ ଶବ୍ଦ ବ୍ୟବହାର କରିପାର । କିନ୍ତୁ ବେଶିଗୁଡ଼ାଏ ସାଙ୍କେତିକ ଶବ୍ଦରେ ସାରାଂଶଟିକୁ ଭାରାକ୍ରାନ୍ତ କରାଯିବା ଉଚିତ ନୁହେଁ, ଯଦ୍ୱାରା କି ପରେ ବୁଝିବା କଷ୍ଟକର ହୋଇପଡ଼ିବ ।

ଅଧ୍ୟୟନାଧୀନ ପୁସ୍ତକରେ ଚିତ୍ର, ସାରଣୀ ଓ ନକ୍ସା ଥାଇପାରେ । ସମ୍ଭବ ହେଲେ ସେଗୁଡ଼ିକୁ ନିଜ ଟିପାଖାତାରେ ଉତାରିବା ଉଚିତ । ଯଦି କୌଣସି ପ୍ରାସଙ୍ଗିକ ଚଳଚିତ୍ର, ଉପନ୍ୟାସ କି କାବ୍ୟ କବିତାର ସାହାଯ୍ୟ ନେବା ପାଇଁ ସୂଚନା ଥାଏ ତାହାହେଲେ ସେଗୁଡ଼ିକର ନାମ ଟିପିଦେବା ପ୍ରୟୋଜନ, ଭବିଷ୍ୟତରେ ସେ ସୂତ୍ରଗୁଡ଼ିକର ସାହାଯ୍ୟ ନିଆଯାଇ ପାରିବ ।

## (୪) ଉନ୍ନତ ଧରଣର ଟିପ୍ପଣୀ ରଖିବା ସୂତ୍ର

ସବୁବେଳେ ଉନ୍ନତ ଧରଣର ଟିପ୍ପଣୀ ରଖିବା ବା ଟିପ୍ପଣୀ ରଖିବାର ସୂତ୍ରକୁ ଉନ୍ନତ କରିବା ବାଞ୍ଛନୀୟ । ପ୍ରଥମେ ସେଗୁଡ଼ିକୁ ବିଭିନ୍ନ ଅଂଶରେ ବିଭକ୍ତ କର, ପ୍ରଧାନ ପ୍ରଧାନ ଅବଧାରଣା ଓ ତାତ୍ତ୍ୱିକ ସିଦ୍ଧାନ୍ତଗୁଡ଼ିକୁ ଚିହ୍ନିତ କର, ମୌଳିକ ତତ୍ତ୍ୱଗତ ମତ ସମୂହକୁ ଓ ପ୍ରଧାନ ଚିନ୍ତାସ୍ରୋତଗୁଡ଼ିକୁ ଉଲ୍ଲେଖ କର ।

ପ୍ରତ୍ୟେକଟି ସ୍ୱାଧୀନ ବିଭାଗର ଶିରୋନାମା ଦିଆ ବିଭାଗ ଆରମ୍ଭରେ ଶିରୋନାମା ଲେଖ । ଏହିଭଳିଭାବେ ସଂକ୍ଷିପ୍ତସାର ବିଷୟବସ୍ତୁଟିର ବିଶ୍ଳେଷଣ ହୁଏ ଓ ଯୋଜନା ହୁଏ । ବିଷୟବସ୍ତୁର ପରବର୍ତ୍ତୀ ଅଧ୍ୟୟନ କାଳରେ ଏହି ଯୋଜନା ଦିଗ୍‌ଦର୍ଶନଭାବେ ଏବଂ ତଥ୍ୟ ଯୋଗାଇବାରେ ସାହାଯ୍ୟକାରୀ ହେବ ।

ଟିପଣୀ ରଖିବା କୌଶଳ ଉନ୍ନତ କରିବା ଅବକାଶରେ ଚିରାଚରିତ ସଙ୍କେତମାନ ବ୍ୟବହାର କରିବା ବିଧେୟ । ଆଗରୁ କୁହାଯାଇଛି ଯେ ସାରାଂଶ ଲିଖନରେ କେତେକ ପଙ୍‌କ୍ତି ରେଖାଙ୍କିତ କରାଯାଇପାରେ ବା ଅଲଗା କାଳିରେ ବା ସ୍ୱତନ୍ତ୍ର ହସ୍ତାକ୍ଷରରେ ଲେଖାଯାଇପାରେ । ଚିରାଚରିତ ସଙ୍କେତମାନ ବ୍ୟବହାର କଲେ ସହଜ ହେବ । ନିମ୍ନ ସଂକେତଗୁଡ଼ିକ ବ୍ୟାପକଭାବେ ଆଦୃତ :

| | |
|---|---|
| ବି: ଦ୍ର:··· | ବିଶେଷ ଦ୍ରଷ୍ଟବ୍ୟ |
| 'ସିକ୍' ·· | ଅବିକଳ ଏହିଭଳି |
| !!! | ଧ୍ୟାନ ଯୋଗ୍ୟ, ଚିତ୍ତାକର୍ଷକ |
| ? | ପ୍ରଶ୍ନବାଚକ |
| ?? | ସନ୍ଦେହଜନକ |
| = | ସମାନ |
| > | ଅଧିକ |
| < | କମ୍ |
| × | ଉଣାଅଧିକେ |
| V.V | ଅନ୍ତର୍ଭୁକ୍ତ ପରିପୂରକ |
| ⋮ | ପୁନରାବୃତ୍ତି |
| Σ | ଫଳାଫଳ ସମଷ୍ଟି |
| ΣΣ | ସର୍ବମୋଟ |
| W | ବିପରୀତକ୍ରମେ |
| ପି ଏସ | ପଶ୍ଚାତ୍ ଲେଖ |

ସାରାଂଶ ଲିଖନବେଳେ ରଙ୍ଗୀନ୍ ପେନ୍ସିଲ ବ୍ୟବହାର କରିପାରନ୍ତି, ଯେ.ଣସି ପ୍ରକାରର ଗୁରୁତ୍ୱ ଦେଇ କରୁଥିଲେ ଓ ଶେଷ ପର୍ଯ୍ୟନ୍ତ ସେହି ଗୁରୁତ୍ୱ ଅତୁଟ ରହୁଥିଲେ ଏହା କରାଯାଇପାରେ ।

ତଥାତଥିତ ସଂକେତ ଦିଆଯାଇ ଓ ରଙ୍ଗୀନ ପେନ୍ସିଲରେ ଚିହ୍ନିତ ହୋଇ ଉତ୍ତମରୂପେ ଲେଖାଯାଇଥିବା ଏକ ସଂକ୍ଷିପ୍ତସାର ଏକ ଅପରିହାର୍ଯ୍ୟ ପାଠ୍ୟବସ୍ତୁରେ ପରିଣତ ହୁଏ ।

ମାର୍କସବାଦ-ଲେନିନବାଦ ତତ୍ତ୍ୱର ଅଧ୍ୟୟନ କଲାବେଳେ ପ୍ରସ୍ତୁତ ସଂକ୍ଷିପ୍ତ-ସାରର ସାହାଯ୍ୟ ଏକାଧିକବାର ନେବାକୁ ପଡ଼ିବ । ଲେନିନ୍ ତାଙ୍କ ଦ୍ୱାରା ପ୍ରସ୍ତୁତ ସାରାଂଶକୁ ବାରମ୍ବାର ପଢ଼ୁଥିଲେ, ଯାହାକି ତାଙ୍କ ମାର୍ଜିନ ଟିପଣୀରୁ ଜଣାପଡ଼େ ।

କୌଣସି ଏକ ବିଷୟ ଅଧ୍ୟୟନ କଲାବେଳେ ବା କୌଣସି ଏକ ବିଷୟରେ ଆଲୋଚନା କରିବାକୁ ଗଲାବେଳେ ସଂକ୍ଷିପ୍ତସାର ଉପରେ ଲୋକେ ଆଖି ବୁଲାଇ ଥାଆନ୍ତି । ଉତ୍ତମଭାବେ ପ୍ରସ୍ତୁତ ସଂକ୍ଷିପ୍ତସାର ବହୁଦିନ ପାଇଁ ଶିକ୍ଷାଳାଭ କାର୍ଯ୍ୟରେ ବାସ୍ତବ ରାଜନୈତିକ ଶିକ୍ଷାଦାନ ଓ ଗଣ ଆନ୍ଦୋଳନ କାର୍ଯ୍ୟରେ ଉପଯୋଗୀ ହୋଇଥାଏ ।

### ତୃତୀୟ ପ୍ରସଙ୍ଗ

# ଦୈନନ୍ଦିନ ତଥ୍ୟର ଉପଯୋଗ

## (୧) ଗଣତଥ୍ୟ ଓ ସ୍ୱ-ଶିକ୍ଷଣ

ଆମର ଏଇ ଶତାବ୍ଦୀ ସାମାଜିକ ପରିବର୍ତ୍ତନ ସଂଘଟିତ ହେଉଥିବା ଓ ବୈଜ୍ଞାନିକ ତଥା ପ୍ରଯୁକ୍ତିବିଦ୍ୟାଗତ ପ୍ରଗତିସାଧିତ ହେଉଥିବା ଯୁଗରେ ଲୋକଙ୍କ ପାଖରେ ପ୍ରବଳ ସ୍ରୋତରେ ତଥ୍ୟ ଓ ସମ୍ବାଦ ଅଜାଡ଼ି ହୋଇ ପଡ଼ୁଛି । ରେଡ଼ିଓ ଶୁଣି ନ ଥିବା, ଟେଲିଭିଜନ ଏବଂ ଚଳଚିତ୍ର ଦେଖି ନ ଥିବା କି ବହି ପଢ଼ି ନ ଥିବା ଲୋକ ଦେଖିବାକୁ ବିରଳ । ନୂଆ ଜୀବନ ଓ ସାମାଜିକ ନ୍ୟାୟ ପ୍ରତିଷ୍ଠିତ ସମାଜ ଗଠନର ସଫଳତା ସହିତ, ଜାତୀୟ ପୁନର୍ଗଠନ କ୍ଷେତ୍ରରେ ଦେଖାଦେଉଥିବା ସୁବିଧା ଅସୁବିଧା ସମ୍ପର୍କରେ ସମ୍ବାଦମାନ ଦେଶମାନଙ୍କର ଅଗମ୍ୟ ଅଞ୍ଚଳରେ ପହଞ୍ଚୁଛି ।

ତଥାପି ପଢ଼ି ପାରୁନଥିବା ଓ ଲେଖିପାରୁ ନଥିବା ଲୋକେ ରହିଛନ୍ତି । ଏଣୁ ସେମାନେ ନିଜେ ନିଜେ ମାର୍କସବାଦ-ଲେନିନବାଦ ତତ୍ତ୍ୱ ପଢ଼ିବାରୁ ବଞ୍ଚିତ । ଏହି ଲୋକେ ଅନ୍ୟ ଲୋକଙ୍କ ମୁହଁରୁ ହିଁ ଏହି ତତ୍ତ୍ୱର ମୂଳନୀତିଗୁଡ଼ିକର ପରିଚୟ ପାଆନ୍ତି । ଯେଉଁମାନେ ପଢ଼ାଶୁଣା ଲୋକେ ମାର୍କସବାଦ-ଲେନିନବାଦ ତତ୍ତ୍ୱକୁ ଆୟତ୍ତ କରିଛନ୍ତି ଓ ନିଜର ବ୍ୟକ୍ତିଗତ ଦୃଢ଼ ବିଶ୍ୱାସ ହୃଦବୋଧରେ ପରିଣତ କରିଛନ୍ତି ସେଇମାନେ ପଢ଼ାଶୁଣା କରି ନଥିବା ଲୋକଙ୍କୁ ଏହା ଶିକ୍ଷା ଦେଉଛନ୍ତି ।

ସୁବିବେଚିତ, ନିର୍ଦ୍ଦେଶାବଳୀ ଥିଲେ ତଥ୍ୟ ଓ ସମ୍ବାଦ ରାଜନୈତିକ ଶିକ୍ଷା ଲାଭ ଓ ଜ୍ଞାନଲାଭକୁ ସୁଗମ କରିଥାଏ । ସମାଜବାଦ ଗଠନର କର୍ତ୍ତବ୍ୟ-ଗୁଡ଼ିକ ଆଡ଼େ ଅନୁପ୍ରାଣିତ କରିଥାଏ ଓ ସେ କର୍ତ୍ତବ୍ୟମାନ ସମ୍ପାଦନ କରିବା ପାଇଁ ପ୍ରେରଣା ଯୋଗାଇଥାଏ । ଗଣ ସମ୍ବାଦ ପରିବେଷଣ ମାଧ୍ୟମମାନ ଲୋକଙ୍କ ପାଖରେ ଜ୍ଞାନ ଭଣ୍ଡାର ଆଣି ପହଞ୍ଚାନ୍ତି । ଏ ଜ୍ଞାନକୁ ହଜମ କରିବା, ମିଳୁଥିବା ତଥ୍ୟ ଓ ସମ୍ବାଦକୁ ନିଜର ଶିକ୍ଷା ଓ ଦୀକ୍ଷା ପାଇଁ ବ୍ୟବହାର କରିବା ହେଉଛି ଗୁରୁତ୍ୱପୂର୍ଣ୍ଣ ।

ଗଣ ସମ୍ବାଦ ପରିବେଷଣ ମାଧ୍ୟମଗୁଡ଼ିକରୁ ପ୍ରୟୋଜନୀୟ ବୈଜ୍ଞାନିକ, ସାମାଜିକ ଓ ରାଜନୈତିକ ଜ୍ଞାନ ଆହରଣ କରିବା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ।

ସାମାଜିକ-ରାଜନୈତିକ ଏବଂ ଶିକ୍ଷଣୀୟ ସାହିତ୍ୟ ନମିଳିଲେ ମଧ୍ୟ, ଶିକ୍ଷା ଦେବା ପାଇଁ ଅଭିଜ୍ଞ ଶିକ୍ଷକ ଓ ପ୍ରଚାରକଙ୍କ ଅଭାବ ଥିଲେ ମଧ୍ୟ ରାଜନୈତିକ ଜ୍ଞାନର ଅ' ଆ' କ' ଖ' ଜନ୍ତୁଣ ଶିଖିବାକୁ ଆରମ୍ଭ କରିପାରିବେ ।

ତଥ୍ୟ ପ୍ରାପ୍ତିର ସର୍ବଶ୍ରେଷ୍ଠ ସମ୍ଭାବନା ଅର୍ପଣ କରନ୍ତି ଦୃକ୍-ଶ୍ରୁତି ମାଧ୍ୟମଗୁଡ଼ିକ । ରେଡ଼ିଓ ଜରିଆରେ ଦେଶର ସର୍ବତ୍ର ସମ୍ବାଦ ପ୍ରଚାରିତ ହେଉଛି । ସେହି ପ୍ରଚାରରୁ ଦେଶ ଓ ବିଦେଶର ଘଟଣାବଳୀ ମନୋଯୋଗ ସହକାରେ ଶୁଣି ଓ ବିଶ୍ଳେଷଣ କରି, ଅଣ-ସମାଜବାଦୀ ଦେଶମାନଙ୍କରେ ଶ୍ରମଜୀବୀମାନଙ୍କ ଶ୍ରେଣୀ ସଂଗ୍ରାମ ବିଷୟରେ, ବୈଜ୍ଞାନିକ ଆବିଷ୍କାର, ଜନସାଧାରଣଙ୍କ ଗଣତନ୍ତ୍ର ଲାଗି ସଂଗ୍ରାମ, ସମାଜବାଦ ଓ କମ୍ୟୁନିଜମ୍ ଲାଗି ସଂଗ୍ରାମ ବିଷୟରେ ସମ୍ବାଦମାନ ଅନୁଶୀଳନ କରି ଜଣେ ନିଜର ଦୃଷ୍ଟିକୋଣକୁ ପ୍ରସାରିତ କରିବା ସଙ୍ଗେ ସଙ୍ଗେ ନିଜର ସାଧାରଣ ଶିକ୍ଷା ଓ ରାଜନୈତିକ ଜ୍ଞାନର ସ୍ତରକୁ ବଢ଼ାଇ ପାରିବେ । ଯଦି ରେଡ଼ିଓରୁ ଶୁଣିବା ସମ୍ବାଦକୁ ସେ ନିଜେ ଅଧ୍ୟୟନ କରୁଥିବା ବିଷୟ ସହିତ ମିଳାଇ ପାରିବେ ତାହା ହେଲେ ତାଙ୍କ ଶିକ୍ଷା ଲାଭ ପ୍ରକ୍ରିୟା ବହୁ ପରିମାଣରେ ବଳଶାଳୀ ହେବ । ପରିଣତି ଏଇ ରୂପ ହେବ : ଅଧ୍ୟୟନାଧୀନ ସମସ୍ୟାଗୁଡ଼ିକ ସମ୍ପର୍କିତ ଜ୍ଞାନ ଦୈନନ୍ଦିନ ବୈଜ୍ଞାନିକ ତଥା ସାମାଜିକ-ରାଜନୈତିକ କର୍ମାଚରଣ ଦ୍ୱାରା ସମୃଦ୍ଧ ହେବ, ଅନ୍ୟ ପକ୍ଷରେ ଅଧ୍ୟୟନାଧୀନ ସମସ୍ୟାଗୁଡ଼ିକର ଦୃଷ୍ଟିକୋଣରୁ ଅର୍ଥାତ୍ ମାର୍କସବାଦ-ଲେନିନବାଦ ତତ୍ତ୍ୱର ଦୃଷ୍ଟିକୋଣରୁ ରେଡ଼ିଓରୁ ମିଳୁଥିବା ସମ୍ବାଦର ବ୍ୟାଖ୍ୟା କରାଯିବ ।

ବେତାର ଓ ଟେଲିଭିଜନ ଯୋଗେ ଆମେ ପାର୍ଟିର ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର, ବୈପ୍ଳବିକ ଗଣତାନ୍ତ୍ରିକ ଆନ୍ଦୋଳନର, ଟ୍ରେଡ଼ ୟୁନିଅନ, ଶ୍ରମିକ ଓ ଯୁବ ସଂଗଠନର, ବିଶିଷ୍ଟ ବିଜ୍ଞାନୀମାନଙ୍କର, ଭୌତିକ ତଥା ସାଂସ୍କୃତିକ ଉତ୍ପାଦନ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଅଗ୍ରଣୀ ବିଶେଷଜ୍ଞମାନଙ୍କର ଶାନ୍ତି ଯୋଦ୍ଧାମାନଙ୍କର, ଫାସିବାଦ, ବର୍ଣ୍ଣବିଦ୍ୱେଷ ଓ ଉପନିବେଶବାଦ ବିରୁଦ୍ଧରେ ଅବତୀର୍ଣ୍ଣ ହୋଇଥିବା ଯୋଦ୍ଧା ମାନଙ୍କର ଭାଷଣ ଶୁଣିପାରିବା । ଆଧୁନିକ ଦୃକ୍-ଶ୍ରୁତି ମାଧ୍ୟମଗୁଡ଼ିକ ସାହାଯ୍ୟରେ ଆମେ ମାର୍କସବାଦୀ-ଲେନିନ୍‌ବାଦୀ ତତ୍ତ୍ୱର ଅନେକ ପ୍ରଶ୍ନ ଉପରେ ପରାମର୍ଶ ମଧ୍ୟ ଲାଭ କରିପାରିବା । ବିଶେଷଜ୍ଞମାନଙ୍କର ପାର୍ଟି ନେତା ଓ ସରକାରୀ କର୍ମକର୍ତ୍ତାମାନଙ୍କର ଏବଂ ଶିକ୍ଷକମାନଙ୍କର ଭାଷଣଗୁଡ଼ିକୁ ମାର୍କସବାଦୀ-ଲେନିନ୍‌ବାଦୀ ତତ୍ତ୍ୱର ବିଭିନ୍ନ ପ୍ରଶ୍ନ ଉପରେ ନିଜର ଜ୍ଞାନକୁ ଉନ୍ନତ କରିବା ଓ ବାସ୍ତବ କର୍ମାଚରଣରୁ ଲାଭ କରିଥିବା ସିଦ୍ଧାନ୍ତ ଗୁଡ଼ିକୁ ସମୃଦ୍ଧ କରିବା ପାଇଁ ଉପଯୋଗ କରିବା ଢଙ୍ଗରେ ରେଡ଼ିଓ ଏବଂ ଟେଲିଭିଜନ ସମ୍ଭାବନା ସୃଷ୍ଟି କରୁଛନ୍ତି ।

ଶିକ୍ଷକ ଓ ବିଶେଷଜ୍ଞମାନେ ରେଡ଼ିଓ ଏବଂ ଟେଲିଭିଜନ କାର୍ଯ୍ୟକ୍ରମରେ ପ୍ରଚାର କରୁଥିବା ଉପାଦେୟ ବିଷୟଗୁଡ଼ିକୁ ଟେପ୍‌ରେକର୍ଡ କରାଯାଇପାରେ। ପରେ ମାର୍କ୍‌ସବାଦ—ଲେନିନବାଦ ତତ୍ତ୍ୱର ଅଧ୍ୟୟନ କାଳରେ ଏହା ବ୍ୟବହାର କରାଯାଇ ପାରିବ। ଶିକ୍ଷକ ଅଭାବ କ୍ଷେତ୍ରରେ ଓ ସ୍ୱ—ଶିକ୍ଷଣ କ୍ଷେତ୍ରରେ ଏଭଳି ରେକର୍ଡିଂ ବିଶେଷ ଉପଯୋଗୀ ଅଟେ।

ଟେକନିକାଲ ବା ବୈଶେଷିକ ତଥ୍ୟ ପରିବେଷଣ ମାଧ୍ୟମଗୁଡ଼ିକ ମଧ୍ୟରେ ଟେଲିଭିଜନ ଓ ସିନେମା ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି। ପ୍ରାମାଣିକ ଚିତ୍ର ବୈଜ୍ଞାନିକ ଚିତ୍ର କାହାଣୀଚିତ୍ର ଓ ସ୍ୱତନ୍ତ୍ର ଟେଲିଭିଜନ କାର୍ଯ୍ୟକ୍ରମ କରିଆରେ ବିପୁଳ ପରିମାଣର ବୈଜ୍ଞାନିକ ତଥା ସାମାଜିକ—ରାଜନୈତିକ ତଥ୍ୟ—ସମ୍ବାଦ ମିଳିଥାଏ। ଏହା ଚିନ୍ତାପାଇଁ ଖୋରାକ ଅର୍ପଣ କରିବା ସଙ୍ଗେ ସଙ୍ଗେ ଜ୍ଞାନର ପ୍ରସାର ଘଟାଇଥାଏ।

ସିନେମା ଓ ଟେଲିଭିଜନରେ ତଥ୍ୟ ପରିବେଷଣ ପ୍ରାଞ୍ଜଳ ଓ ଆକର୍ଷଣୀୟ ହେଉଥିବାରୁ ଆମେ ବସ୍ତୁ, ପ୍ରକ୍ରିୟା ଓ ବାସ୍ତବତାର ପ୍ରପଞ୍ଚଗୁଡ଼ିକର ସ୍ଥିତି ଏବଂ ବିକାଶକୁ ଅନୁଶାସିତ କରୁଥିବା ନିୟମଗୁଡ଼ିକର ଆବିଷ୍କାର କରିବାକୁ ସମର୍ଥ ହେଉ। ଅତ୍ୟନ୍ତ ଅମୂର୍ତ୍ତ ଅବଧାରଣା ମୂର୍ତ୍ତ ହୋଇ ପ୍ରଦର୍ଶିତ ହୋଇଥାଏ। ସ୍ଥାବର ବସ୍ତୁ ଓ ଜଙ୍ଗମ ବସ୍ତୁର ସଂଯୋଗ ଆମକୁ ବିକାଶର ପ୍ରକ୍ରିୟା ଅନୁସରଣ କରିବାକୁ, ତା'ର ଆଭ୍ୟନ୍ତରୀଣ ହେତୁଗୁଡ଼ିକୁ ଓ ଆଙ୍ଗିକ ତଥ୍ୟ ପ୍ରବଣତାଗୁଡ଼ିକୁ ଦେଖିବାକୁ ସମର୍ଥ କରିଥାଏ।

ଅଳ୍ପଦିନ ହେବ ସମାଜବାଦୀ ଦେଶମାନେ ମାର୍କ୍‌ସବାଦ—ଲେନିନବାଦର ସକଳ ଅବୟବକୁ ଆଧାରକରି ଶିକ୍ଷଣୀୟ ଚଳଚ୍ଚିତ୍ରମାନ ତିଆରି କରିଛନ୍ତି। ଏହିଭଳି ଚଳଚ୍ଚିତ୍ରଗୁଡ଼ିକ ଅଧ୍ୟୟନ ବସ୍ତୁର କାର୍ଯ୍ୟାବଳୀକୁ ଗୋଚରକୁ ଆଣିଥାଏ। ଏଗୁଡ଼ିକ ବିଷୟବସ୍ତୁର ମୂଳ ସୂତ୍ରଗୁଡ଼ିକୁ ବ୍ୟକ୍ତକରିବା ଭିତ୍ତିରେ ଅନେକଗୁଡ଼ିଏ ତଥ୍ୟ ପରିବେଷଣ କରିଥାନ୍ତି, ଯାହାକି ଏକ ପକ୍ଷରେ ଦର୍ଶକର ଜ୍ଞାନକୁ ଗଭୀରତର ଓ ନିର୍ଭୁଲ କରିବା ସଙ୍ଗେ ସଙ୍ଗେ ଅନ୍ୟପକ୍ଷରେ ସ୍ୱାଧୀନ ଚିନ୍ତା ଓ ପରବର୍ତ୍ତୀ ବିଶ୍ଳେଷଣ ପାଇଁ ଖୋରାକ ଯୋଗାଇ ଥାଏ।

ସୁବୋଧ ବିଜ୍ଞାନ ଚଳଚ୍ଚିତ୍ରମାନଙ୍କୁ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଶ୍ନର ଅଧ୍ୟୟନ ପାଇଁ ବ୍ୟବହାର କରାଯାଇ ପାରେ। ଏଭଳି ଚଳଚ୍ଚିତ୍ରମାନଙ୍କରେ ପରିବେଷିତ ହୋଇଥିବା ତଥ୍ୟ ବିଷୟର ଅଧ୍ୟୟନ ପାଇଁ ପ୍ରୟୋଜନୀୟତାଠାରୁ ଅଧିକ ହୋଇଥାଇ ପାରେ। କିନ୍ତୁ ଏ ଚଳଚ୍ଚିତ୍ରଗୁଡ଼ିକ ଆମର ଆନୁସଙ୍ଗିକ ସହାୟକ ବୋଲି ମନେକଲେ ଆମେ ଦେଖିବା ଯେ ଆମ

ଆବଶ୍ୟକତା ପାଇଁ ଏଗୁଡ଼ିକର ଚମତ୍କାର ଭୂମିକା ରହିଛି ସୁବୋଧ ବିଜ୍ଞାନ ଚଳଚ୍ଚିତ୍ର ଦେଖିବା ବେଳେ ସେଥିରେ ଥିବା ତଥ୍ୟଗୁଡ଼ିକୁ ହୃଦୟଙ୍ଗମ କରି ଯାହା ଅତ୍ୟାବଶ୍ୟକୀୟ ସେହି ଗୁଡ଼ିକହିଁ ଗ୍ରହଣ କରିବାକୁ ହେବ।

ସମ୍ବାଦ ଓ ପ୍ରାମାଣିକ ଚଳଚ୍ଚିତ୍ରଗୁଡ଼ିକ ସମ୍ବାଦ ଓ ତଥ୍ୟରେ ଭରପୂର । ତଦ୍ୱାରା ଆମେ ତାତ୍ତ୍ୱିକ ଅନୁଶାସନଗୁଡ଼ିକୁ ସାମାଜିକ ଓ ଐତିହାସିକ କର୍ମାଚରଣ ସହିତ ସାମ୍ପ୍ରତିକ ସାମାଜିକ ପ୍ରକ୍ରିୟା ସହିତ ସଂପୃକ୍ତ କରିବାକୁ ସମର୍ଥ ହୋଇଥାଉ । ଏହି ଚଳଚ୍ଚିତ୍ରମାନ, ବା ସେଗୁଡ଼ିକର ଅଂଶବିଶେଷ ଆମକୁ ଆମ ସମୟର ବୈପ୍ଳବିକ ମନ୍ତ୍ର ମାର୍କସବାଦ-ଲେନିନ୍‌ବାଦର ବସ୍ତୁ ସନ୍ଦର୍ଭକୁ ଚମତ୍କାର ଭାବେ ଦର୍ଶାଇଥାନ୍ତି ।

ପରିଶେଷରେ ପୂର୍ଣ୍ଣାଙ୍ଗ କାହାଣୀ ଚିତ୍ରଗୁଡ଼ିକ ଅତୀବ ଆଗ୍ରହୋଦ୍ଦୀପକ ଅଟନ୍ତି । ସେଗୁଡ଼ିକରେ ସାମାଜିକ ପ୍ରକ୍ରିୟାଗୁଡ଼ିକ, ସମାଜବାଦୀ ଜୀବନଧାରା ଓ ପୁଞ୍ଜିବାଦୀ ଜୀବନଧାରା ମଧ୍ୟରେ ଥିବା ପାର୍ଥକ୍ୟ, ସମାଜବାଦୀ ସମାଜର ପ୍ରକୃତ ଗଠନତନ୍ତ୍ର ଓ ପୁଞ୍ଜିବାଦୀ ସମାଜର ସୀମିତ ଗଠନତନ୍ତ୍ର, ବିଭିନ୍ନ ସମାଜରେ ଏବଂ ଭିନ୍ନ ଭିନ୍ନ ଐତିହାସିକ କାଳରେ ଶ୍ରେଣୀ ସମ୍ପର୍କ ଓ ଜାତୀୟ ସମ୍ପର୍କର ବିକାଶ ଅତି ପ୍ରାଞ୍ଜଳ ଭାବେ ପ୍ରଦର୍ଶିତ ହୋଇଥାଏ ।

ଏହି ଚଳଚ୍ଚିତ୍ର ଗୁଡ଼ିକରୁ ଅଧିତ ବିଷୟବସ୍ତୁ ସମ୍ପର୍କିତ ତଥ୍ୟ ଆହରଣ କରି ବିଶ୍ଳେଷଣ କରିବା ଫଳରେ ସେଗୁଡ଼ିକୁ ହୃଦୟଙ୍ଗମ କରି ଅନୁଧ୍ୟାନ କରିବା ସ୍ୱଚ୍ଛନ୍ଦ ହୋଇଥାଏ ।

ଅଧିତ ପ୍ରକ୍ରିୟା ବା ପ୍ରପଞ୍ଚର ନିର୍ଯ୍ୟାସକୁ ଶେଷ ଚିହ୍ନଟ କରିବା ସେଥି ସହିତ ତାତ୍ତ୍ୱିକ ବସ୍ତୁର ଚଳଚ୍ଚିତ୍ର ସନ୍ଦେଶ ସହିତ ଅନ୍ତଃ ସମ୍ପର୍କ ବା ଆନ୍ତଃ-ନିର୍ଭରଶୀଳତାକୁ ହୃଷ୍ଟି କରିବା, ଅବହିତ ବସ୍ତୁଠାରୁ ନୂତନ ବସ୍ତୁକୁ ବିକ୍ଷିପ୍ତ ବସ୍ତୁ ଠାରୁ ଶେଷର ବହିର୍ଭୂତ ବସ୍ତୁକୁ ଅଲଗା କରିବା ଓ ସେ ସନ୍ଦେଶରେ କ'ଣ ନୂଆ ତାହା ଆବିଷ୍କାର କରିବା ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଚଳଚ୍ଚିତ୍ର ଦେଖିବାବେଳେ ବିଭିନ୍ନ ସମୟରେ ଓ ବିଭିନ୍ନ ସ୍ଥାନରେ ଘଟଣାବଳୀକୁ ତୁଳନା କରିବା ପ୍ରୟୋଜନ, ସେଥି ମଧ୍ୟରୁ ବିଭିନ୍ନ ଉପାଦାନ ଗୁଡ଼ିକୁ ବାଛିବା, ଅତ୍ୟାବଶ୍ୟକ ଓ ଅନ୍ୟାନ୍ୟ ଉପାଦାନଗୁଡ଼ିକୁ ବାଛିବା ପ୍ରୟୋଜନ । ତାହାହେଲେ ସାଧାରଣ ଧାରଣା କରି ହେବ ଓ ଅଧିକ ବସ୍ତୁ ପାଇଁ ଚଳଚ୍ଚିତ୍ରରୁ କି ନୂଆ କଥା ମିଳିଲା, କ'ଣ ଅସ୍ପଷ୍ଟ ରହିଗଲା ତାହା ଜାଣି ହେବ ।

ବୈପ୍ଳବିକ କର୍ମାଚରଣର ବହୁ ଦିଗ ସମ୍ପର୍କରେ ମ୍ୟୁଜିୟମଗୁଡ଼ିକରୁ ଅନେକ ଜ୍ଞାତବ୍ୟ ବସ୍ତୁ ମିଳିଥାଏ । ଗୋଟିଏ ଗୋଟିଏ ବସ୍ତୁ, ବା ସାମାଜିକ ବ୍ୟବସ୍ଥା ବା ପ୍ରପଞ୍ଚର ବିକାଶ ପ୍ରକ୍ରିୟା ଜାଣିବାରେ ସେଗୁଡ଼ିକ ସାହାଯ୍ୟ କରନ୍ତି । ଗୋଟିଏ ମିଉଜିୟମରେ ଉତ୍ତମ ଭାବରେ ପ୍ରଦର୍ଶିତ ବସ୍ତୁଗୁଡ଼ିକ ପ୍ରକ୍ରିୟା, ପ୍ରପଞ୍ଚ ବା ଅଧିତ ବସ୍ତୁର ପ୍ରକ୍ରିୟାର ଉପାଦାନଗୁଡ଼ିକର ଅନ୍ତଃ ସମ୍ପର୍କକୁ, ବିକାଶର କ୍ରମକୁ ଓ ରୂପାନ୍ତରକୁ ବା ଗୁଣାତ୍ମକଭାବେ ଭିନ୍ନ ଅଭି ଏକ ବସ୍ତୁରେ ଉପନୀତ ହେବାର ପରିଣତିକୁ ପ୍ରାଞ୍ଜଳ ଭାବେ ଆମ ସମ୍ମୁଖରେ ଦେଖାଇ ଥାନ୍ତି । ମ୍ୟୁଜିୟମରେ ବ୍ୟାଖ୍ୟାକାର ବା କୌଣସି ଶିକ୍ଷକଙ୍କ ବ୍ୟାଖ୍ୟା ଶୁଣିବାର ସୁଯୋଗ ସହ ଯଦି ମ୍ୟୁଜିୟମ ଦେଖାଯାଏ, ତାହାହେଲେ ଏହା ସମସ୍ତ କ୍ରମେ ପ୍ରକ୍ରିୟାକୁ ହୃଦୟଙ୍ଗମ କରିବା; ଉପଯୋଗ କରିବା ଓ ନିର୍ଦ୍ଦିଷ୍ଟ ତାତ୍ତ୍ୱିକ ବସ୍ତୁକୁ ପରିପୁଷ୍ଟି ତଥା ପ୍ରତିଷ୍ଠା କରିବା ପାଇଁ ଉତ୍ତମ ଭିତ୍ତି ସ୍ୱରୂପ କାର୍ଯ୍ୟ କରିବ ।

ଅଧ୍ୟୟନାଧୀନ ସମସ୍ୟା ଉପରେ ଓ ତତ୍ ସଂଶ୍ଳିଷ୍ଟ ସମସ୍ୟା ଉପରେ ମ୍ୟୁଜିୟମଗୁଡ଼ିକରୁ ପ୍ରଚୁର ତଥ୍ୟ ମିଳେ । ସେଗୁଡ଼ିକ ସାଂସ୍କୃତିକ ଜ୍ଞାନ ଓ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀକୁ ପ୍ରଶସ୍ତ କରିଥାନ୍ତି । ସେମାନେ ଦେଖାନ୍ତି ଯେ ମାର୍କସ-ବାଦ-ଲେନିନବାଦ ତତ୍ତ୍ୱ ପ୍ରାକୃତିକ ବିଜ୍ଞାନ ଭିତ୍ତି ଉପରେ ଆଧାରିତ, ବାସ୍ତବତା ଦ୍ୱାରା, ସାମାଜିକ ତଥା ଐତିହାସିକ କର୍ମାଚରଣ ଦ୍ୱାରା ପ୍ରତିପାଦିତ ।

## (୨) ସାହିତ୍ୟର ଉପଯୋଗ

ଲୋକମାନଙ୍କ ଶିକ୍ଷା ଦୀକ୍ଷା ପାଇଁ କବିତା, ଉପନ୍ୟାସ ଓ ନାଟକ ଅତୀବ ମୂଲ୍ୟବାନ । ସାହିତ୍ୟିକ କୃତିଗୁଡ଼ିକ ପାଠକ ସମ୍ମୁଖରେ ଏକ ପ୍ରଶସ୍ତ ଦୁନିଆ ଉନ୍ମୋଚିତ କରି, ଗଣତନ୍ତ୍ର, ସମାଜବାଦ ଓ ସାମ୍ୟବାଦ ଭଳି ଆଦର୍ଶ ପାଇଁ ସଂଗ୍ରାମ କରୁଥିବା ଚରିତ୍ରଗୁଡ଼ିକର ଜୀବନ ଓ କର୍ମର ଦୃଷ୍ଟାନ୍ତ ଦେଇ ପାଠକକୁ ନିଜର ଜ୍ଞାନ ଓ ଶକ୍ତିକୁ କର୍ମରେ ନିୟୋଜିତ କରିବା ପାଇଁ ପ୍ରଣୋଦିତ କରନ୍ତି । ବିପ୍ଳବ ପାଇଁ ଆତ୍ମୋତ୍ସର୍ଗ କରିବା, ନୂଆ ନୂଆ ବୈଜ୍ଞାନିକ ଉଦ୍ଭାବନ କରି ଜନକଲ୍ୟାଣ ସାଧନ କରିବା ଆଦି ସ୍ୱପ୍ନ ସାହିତ୍ୟରୁ ସୃଷ୍ଟି ହୋଇ ବହୁ ଅସାଧାରଣ ବ୍ୟକ୍ତିଙ୍କ ଗତିପଥ ନିର୍ଦ୍ଦିଷ୍ଟ କରିଦେଇ ଥିବା ଦୃଷ୍ଟାନ୍ତ ରହିଛି ।

ସାହିତ୍ୟ ବାସ୍ତବତାକୁ ଶ୍ରେଣୀ ଅବସ୍ଥାନରୁ ପ୍ରତିଫଳିତ କରି ବୈପ୍ଳବିକ ଶିକ୍ଷା ଓ ସ୍ୱୟଂ-ଶିକ୍ଷଣ ପାଇଁ ଏକ ଶକ୍ତିଶାଳୀ ଅସ୍ତ୍ର ରୂପେ କାର୍ଯ୍ୟ କରେ ।

ଲେନିନ ଏକାଧିକ ବାର ଜୋର ଦେଇ କହିଥିଲେ ଯେ ନୂଆ ମଣିଷ ଗଢ଼ିବାର ଉଦ୍ୟମରେ ସାହିତ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଆୟୁଧ । ସାହିତ୍ୟ ପ୍ରତି

ସୃଜନାତ୍ମକ ମତଗତ, ସାହିତ୍ୟର ଶ୍ରେଣୀ-ଭିତ୍ତିକ ମୂଲ୍ୟାୟନ, ମଣିଷ ଜାତିର ସମ୍ବୋଧନ ସୃଷ୍ଟିଗୁଡ଼ିକୁ ସମାଜବାଦ ଓ ସାମ୍ୟବାଦ ଶିକ୍ଷା ଦେବାରେ ଉପଯୋଗ କରିବା ପାଇଁ ସେ ଜୋର ଦେଉଥିଲେ ।

ଯୁଗର ସାମାଜିକ, ରାଜନୈତିକ, ଦାର୍ଶନିକ, ଅର୍ଥନୈତିକ ଓ ଅନ୍ୟାନ୍ୟ ଦୃଷ୍ଟିଭଙ୍ଗୀ ପ୍ରତିଫଳିତ କରୁଥିବା ପ୍ରକୃତ ଜନ ସାହିତ୍ୟ ସମାଜବାଦ ଓ ସାମ୍ୟ-ବାଦ ଚିନ୍ତାଧାରାର ପ୍ରସାର ଘଟାଇବାରେ ବହୁ ମୂଲ୍ୟବାନ ଅବଦାନ ଦେଇଛି ଓ ଦେଇ ଚାଲିଛି । ବ୍ୟକ୍ତିର ମନୋବୃତ୍ତି ଗଠନରେ, ଚରିତ୍ର ଓ ସଂକଳ୍ପକୁ ବଳିଷ୍ଠ କରିବାରେ ସାହିତ୍ୟର ଅପରିମେୟ ପ୍ରଭାବ ରହିଛି ।

ସାହିତ୍ୟ ଦୁନିଆରେ ସଂଘଟିତ ହେଉଥିବା ପ୍ରକ୍ରିୟା ଗୁଡ଼ିକୁ ତାର ନିଜସ୍ୱ ଆଙ୍ଗିକରେ ପ୍ରକଟନ କରି ସାମାଜିକ ବିକାଶ ପଥରେ ଦେଖା ଦେଉଥିବା ଅଗଣିତ ସମସ୍ୟାର ସମାଧାନ ପଥ ସୂଚିତ କରିଥାଏ । ଏହା ପାଠକଙ୍କୁ ପ୍ରଚୁର ବୌଦ୍ଧିକ ସମ୍ପଦ ଅର୍ପଣ କରେ, ଆଜି ଯାହାକୁ ଆୟତ୍ତ ନକରି କେହି ନିଜକୁ ଶିକ୍ଷିତ ବୋଲି, ଯୋଗ୍ୟ ଲୋକ ବୋଲି କହି ପାରିବ ନାହିଁ । ଏହା ନମନୀୟ ଚିନ୍ତନ ଓ ଓ ସୃଜନଶୀଳ ସାକ୍ଷାତ ପାଇଁ ସାହାଯ୍ୟ କରେ, ବ୍ୟକ୍ତିଗତ ଅଭିଜ୍ଞତାର ଅଭାବକୁ ପୂରଣ କରେ, ଲୋକଙ୍କୁ ପ୍ରଣୋଦିତ କରେ ଉଦ୍‌ବେଗ ଓ କର୍ମତତ୍ପରତା ମାର୍ଗରେ ।

ନୋବେଲ ପୁରସ୍କାର ବିଜେତା ମିଖାଇଲ ସୋଲୋକୋଭଙ୍କ ପ୍ରଣୀତ "କୁଆଁରି ଭୂଇଁର ଅପକର୍ଷଣ" ଉପନ୍ୟାସଟି ସୋଭିଏତ ୟୁନିଅନର ଗ୍ରାମାଞ୍ଚଳରେ ଆଦ୍ୟ କୋଠ ଗୃହର ଏକ ଚମତ୍କାର ଚିତ୍ର । ଇଂରାଜୀ ସମେତ ବହୁ ଭାଷାରେ ଅନୁଦିତ ଏହି ଉପନ୍ୟାସ ଆଜି ମଧ୍ୟ ଅଗଣିତ ପାଠକଙ୍କ ପାଖରେ ଏକ ହୃଦୟ-ଗ୍ରାହୀ ପାଠ୍ୟପୁସ୍ତକ ହୋଇ ରହିଅଛି ।

ସାଂବାଦିକ ରଚନା ଓ ଭ୍ରମଣଗାଥାଗୁଡ଼ିକ ମଧ୍ୟ ବହୁ ଶିକ୍ଷଣୀୟ ବିଷୟ-ବସ୍ତୁର ଅଧିକାରୀ ଅଟନ୍ତି । ଏଗୁଡ଼ିକରେ ବିଜ୍ଞାନ, କାରିଗରୀ ଓ ରାଜନୀତି ସଂପର୍କିତ ପ୍ରଚୁର ତଥ୍ୟ ରହିଥାଏ । ଏଣୁ ଏଗୁଡ଼ିକ ଜ୍ଞାନ ଆହରଣ ପାଇଁ ଅତି ଉପାଦେୟ ଉତ୍ସ ଅଟନ୍ତି । ଏହି ଧରଣର ସାହିତ୍ୟ ଲୋକର ସାଧାରଣ ସାଂସ୍କୃତିକ ସ୍ତରକୁ ଉନ୍ନୀତ କରେ, ତାର ଶୈଳୀକୁ ସମୃଦ୍ଧ କରେ, ଏବଂ ନିଜ ଚିନ୍ତାକୁ କିପରି ପ୍ରାଞ୍ଜଳ ଓ ସୁବୋଧ ଭାଷାରେ ପ୍ରକାଶ କରିପାରିବ ତାହା ଦର୍ଶାଇ ଥାଏ ।

ମାର୍କସ, ଏଙ୍ଗେଲସ ଓ ଲେନିନଙ୍କ ପ୍ରଣୀତ ଗ୍ରନ୍ଥଗୁଡ଼ିକରେ ଶହ ଶହ ସାହିତ୍ୟିକ ଅନୁଚ୍ଛେଦ ରହିଛି । ସେଗୁଡ଼ିକ ସେମାନଙ୍କ ରଚନାର ଅର୍ଥ ଓ ସାରବତ୍ତାକୁ ଭଲଭାବରେ ବୁଝିବା ନିମନ୍ତେ ସହାୟକ ଅଟନ୍ତି । ସାହିତ୍ୟିକ

ଅନୁଚ୍ଛେଦ, ବ୍ୟଙ୍ଗବିଦ୍ରୂପ, ରହସ୍ୟ ତୁଳନା ଓ ଶ୍ଳେଷ ଆଦିର ପ୍ରୟୋଗ ସେମାନଙ୍କୁ ସେମାନଙ୍କ ଚିନ୍ତାଧାରାକୁ ଅଧିକ ଶାଣିତ ଓ ପ୍ରାଞ୍ଜଳଭାବେ ବ୍ୟକ୍ତ କରିବାରେ ସାହାଯ୍ୟ କରିଛି ।

ଲେନିନ ବାରମ୍ବାର ସୂଚାଇଛନ୍ତି ଯେ, ଏଭଳି କେତକ ଶ୍ଳେଷ ଓ "ପକ୍ଷଯୁକ୍ତ ଶବ୍ଦ ରହିଛି ଯେଉଁଗୁଡ଼ିକ ଜଟିଳ ବୋଲି ବୁଝାଯାଉଥିବା ପ୍ରପଞ୍ଚଗୁଡ଼ିକୁ ଅତି ସୂକ୍ଷ୍ମରେ ପ୍ରକାଶ କରିଥାନ୍ତି ।" (ଭି. ଆଇ. ଲେନିନ୍, ରଚନାବଳୀ, ୨୦ଶ ଖଣ୍ଡ, ପୃ: ୨୮୪) ।

ଏଠାରେ ସ୍ମରଣ କରାଯାଇପାରେ ଯେ, ଲେନିନ କେବଳ ମୌଳିକ ମୂଲ୍ୟ ବିଶିଷ୍ଟ ସାହିତ୍ୟିକ ମନ୍ତବ୍ୟମାନ ପ୍ରୟୋଗ କରୁ ନଥିଲେ, ଗ୍ରାମ୍ୟ ଢଗ-ଢମାଳି, ପ୍ରବାଦ ଓ ପ୍ରବଚନମାନ ମଧ୍ୟ ଆବଶ୍ୟକ ସ୍ଥଳେ ବ୍ୟବହାର କରୁଥିଲେ ।

ଉପନ୍ୟାସ ଓ ଶୃଢ଼ ଗାଥାଗୁଡ଼ିକରୁ ଉତ୍ତମ ଅଭିବ୍ୟକ୍ତିମୂଳକ ଭାଷା ଓ ଅବିକଳ ଅର୍ଥ ପ୍ରକାଶ କରୁଥିବା ଶବ୍ଦମାନ ଶିଖିବାକୁ ମିଳିଥାଏ । ଜଣେ ସୁପାଠକ ଦାର୍ଶନିକ ଓ ଲେଖକମାନଙ୍କ ଦ୍ୱାରା ସ୍ପଷ୍ଟ ପ୍ରକାଶ ଭଙ୍ଗୀର ସମ୍ପଦକୁ ସହଜ ଓ ସ୍ୱଚ୍ଛନ୍ଦଭାବେ ବ୍ୟବହାର କରିବାକୁ ଅନାୟାସେ ଶିଖିପାରିବେ ।

ସାହିତ୍ୟରେ ବିଶାଳ ଭଣ୍ଡାର ରହିଛି ଯେଉଁଥିରୁ ଜଣେ ନିଜ ଭାବନାକୁ ରୂପ ଦେବା ନିମନ୍ତେ ଓ ଅଦ୍ଭୁତ ବିଷୟବସ୍ତୁକୁ ନିଖୁଣଭାବେ ବ୍ୟକ୍ତ କରିବା ନିମନ୍ତେ ସାଦୃଶ୍ୟମାନ ପାଇପାରିବ । ଏତଦବ୍ୟତୀତ ସାହିତ୍ୟିକ ଉପମାର ପ୍ରୟୋଗ ଅବିଚ୍ଛିନ୍ନ ଚିନ୍ତାର ସ୍ରୋତ ଉଦ୍ରେକ କରିଥାଏ । ସଦ୍ୟ ଅଦ୍ଭୁତ ତଥ୍ୟ ପୂର୍ବରୁ ଅଦ୍ଭୁତ ତଥ୍ୟ ସହିତ ସଂଯୁକ୍ତ ହୋଇଥାଏ ଏବଂ ତା ଫଳରେ ଅଧ୍ୟୟନା-ଧୀନ ବିଷୟବସ୍ତୁ ଅଧିକ ସହଜ ଓ ସ୍ଥାୟୀଭାବେ ମାନସ ପଟରେ ଅଙ୍କିତ ହୋଇଥାଏ ।

ଏକ ସାହିତ୍ୟିକ ଉପମା ଏକ ନିୟମାନୁବର୍ତ୍ତୀ ପ୍ରପଞ୍ଚର ପ୍ରତିଫଳନ କରିଥାଏ, ଏକ ନିର୍ଦ୍ଦିଷ୍ଟ ବ୍ୟକ୍ତିର ଅନ୍ତର୍ନିହିତ ବୈଶିଷ୍ଟ୍ୟକୁ ବ୍ୟକ୍ତ କରିଥାଏ, ଗୋଟିଏ ସାମ୍ପ୍ରାଦାୟିକ ଜନଗୋଷ୍ଠୀର ଚରିତ୍ରକୁ ପ୍ରକାଶ କରିଥାଏ ।

ଦୃଷ୍ଟାନ୍ତସ୍ୱରୂପ ଦ୍ରବ୍ୟଗୁଡ଼ିକୁ କେବଳ ସଞ୍ଚୟକରି ରଖିଦେଲେ ସମ୍ପଦ ସୃଷ୍ଟି ହୁଏ ବୋଲି ରହିଥିବା ଧାରଣା ଯେ ଅବାନ୍ତର ତାହା ଦେଖାଇବାକୁ ଯାଇ ମାର୍କସ, ବାଲଯାକଙ୍କ ଲିଖିତ ଏକ ଉପନ୍ୟାସର ନାୟକ ସୁଧଖୋର ଗୋବ୍‌ସେକଙ୍କ ଅବତାରଣା କରିଛନ୍ତି । ଗୋବସେକ୍‌ଙ୍କ ବାର୍ଦ୍ଧକ୍ୟର ଗୋଟିଏ

ଲକ୍ଷଣ ଥିଲା ଦ୍ରବ୍ୟ ପରେ ଦ୍ରବ୍ୟ ଜମା କରି ବଳିଶାଳୀ ହେବା । କିନ୍ତୁ ପରିଶେଷରେ ସେ ଦ୍ରବ୍ୟମାନ ତାଙ୍କ ଭଣ୍ଡାର ଘରେ ପଚିଲା ଓ କଲଙ୍କି ଲାଗି ନଷ୍ଟ ହେଲା । (କାର୍ଲ ମାର୍କସ, କ୍ୟାପିଟାଲ, ପ୍ରଥମ ଖଣ୍ଡ, ଫରେନ୍ ଲାଙ୍ଗୁଏଜ୍ ପବ୍ଲିଶିଂ ହାଉସ, ମସ୍କୋ, ପୃ : ୫୮୮-୫୮୯) ।

ଲେନିନ ଅନେକ ସମୟରେ ବାସ୍ତବତା ସହିତ ସାଦୃଶ୍ୟ ଥିବା ଉପମାମାନ ବ୍ୟବହାର କରୁଥିଲେ । ସମସ୍ତେ ରୁଷୀୟ କାହାଣୀ ଲେଖକ ଇଭାନ୍ କ୍ରାଇଲୋଭଙ୍କ ଗଧ, ଛେଳି, ମାଙ୍କଡ଼ ଓ ଭାଲୁ ଗାୟକ ଗୋଷ୍ଠୀଟିଏ ଗଢ଼ିବା ପାଇଁ ବିଫଳ ଉଦ୍ୟମ କରିଥିବା କାହାଣୀ ଜାଣିଥିବେ । ୧୯୧୭ ମସିହା ଫେବ୍ରୁଆରୀରେ ଜାରଶାହୀ ସ୍ୱେଚ୍ଛାଚାରର ପତନ ପରେ କ୍ଷମତାହୀନ ବୁର୍ଜୁଆ ଅସ୍ଥାୟୀ ସରକାରରେ ବାରମ୍ବାର ମନ୍ତ୍ରୀ ଅଦଳ ବଦଳ ବିଷୟର ଅବତାରଣା କରି ଲେନିନ୍ କହିଥିଲେ : "ସେମାନେ ମନ ମିଳାଇ ଚାଲି ପାରିଲେ ନାହିଁ ··ଯେ ଯେଉଁ ସମୟରେ ସ୍ଥାନ ଲାଭ କରୁ ନା କାହିଁକି···" ( ଭି. ଆଇ. ଲେନିନ୍, ରଚନାବଳୀ, ୨୯ଶ ଖଣ୍ଡ, ପୃ-୬୯) । କ୍ରାଇଲୋଭଙ୍କ ଉକ୍ତି ହେଉଛି : "ବନ୍ଧୁଗଣ ତୁମେ ଯେତେ ଆସନ ପରିବର୍ତ୍ତନ କର ନା କାହିଁକି, ତୁମେ କେବେ ଗାୟକ ହୋଇପାରିବ ନାହିଁ ।"

ସୋଭିଏତ୍ ରୁଷିଆର ଶତ୍ରୁମାନଙ୍କ ସମ୍ପର୍କରେ କହିବାକୁ ଯାଇ ଲେନିନ୍ ଏକାଧିକବାର କ୍ରାଇଲୋଭଙ୍କ ଉପକଥାର "ହାତୀ ଓ କୁକୁର" ପ୍ରସଙ୍ଗର ଅବତାରଣା କରିଛନ୍ତି । ସେ କାହାଣୀଟିରେ ରହିଛି ଯେ ହାତୀଟିଏ ରାସ୍ତାରେ ପାଦୁଲ ପକାଇ ଯିବାବେଳେ ଲୋକେ ତା'ପ୍ରତି ସମ୍ଭ୍ରମ ଓ ସମ୍ମାନ ଦୃଷ୍ଟିରେ ଚାହିଁଥିବାବେଳେ କୁକୁରଟିଏ ନିଜକୁ "ବଳଶାଳୀ" ଦେଖାଇବା ପାଇଁ କର୍ଣ୍ଣଫଟାଇ ଭୁକିବାକୁ ଲାଗିଲା । ଅଥଚ ହାତୀ ସେ ଆଡ଼କୁ ଭ୍ରୂକ୍ଷେପ ନ କରି ତା' ବାଟରେ ଚାଲିଗଲା । ଲେନିନ୍ ଲେଖିଥିଲେ : "ବୁର୍ଜୁଆ ସମାଜର ଗେଲ୍ହା କୁକୁରମାନେ··· ବିଶାଳ ଜଙ୍ଗଲ ଦଳନ କଲାବେଳେ ଗଣ୍ଡି କାଠ ଖଣ୍ଡମାନ ଏଣେତେଣେ ବିଛୁରିତ ହୋଇ ପଡ଼ୁଥିବାର ଦେଖି ମନଇଚ୍ଛା ଭୁକନ୍ତୁ । ସେମାନେ ଯଦି ସର୍ବହରା ହାତୀକୁ ଦେଖି ନଭୁକିବେ ତାହା ହେଲେ ରହିବେ କାହିଁକି ? ସେମାନେ ଭୁକନ୍ତୁ । ଆମେ ଆମ ରାସ୍ତାରେ ଚାଲିଥିବା···" (ଭି. ଆଇ. ଲେନିନ, ରଚନାବଳୀ, ୨୭ଶ ଖଣ୍ଡ, ପୃ : ୨୭୨) ।

ବେଳେବେଳେ ଏକ ସାହିତ୍ୟିକ ରୂପକଳ୍ପ ଏତେ ଅର୍ଥଗର୍ଭିତ ଯେ ଗୋଟିଏ ଶବ୍ଦହିଁ ଅମାପ ଚିନ୍ତାଧାରାର ବାହକ ହୋଇଥାଏ । ସାହିତ୍ୟର ଏହି ଯେଉଁ ସାମର୍ଥ୍ୟ ରହିଛି ସଂକ୍ଷିପ୍ତ ଭାଷାରେ ବିପୁଳ ଜ୍ଞାନ ଅର୍ପଣ କରିବାର ସେଇ

ସମର୍ଥ୍ୟର ସୁଯୋଗ ଜଣେ ମାର୍କସବାଦୀ-ଲେନିନବାଦୀ ତତ୍ତ୍ୱର ଅଧ୍ୟୟନ କଲା-ବେଳେ ନେଇ ପାରିବେ ।

ସର୍ବଜନାଦୃତ ସାହିତ୍ୟିକ ରୂପ କଳ୍ପଗୁଡ଼ିକୁ ନୂତନ ଉପାଦାନ ସମ୍ବଳିତ କରିବା ପାଇଁ ରୂପାନ୍ତରିତ କରାଯାଇ ପାରିବ । ଦାନ୍ତେଙ୍କ ଡ଼ିଭାଇନ କମେଡ଼ିର "ଏଠାକୁ ଯେଉଁମାନେ ଅସୁଛ, ସବୁ ଆଶା ପରିହାରକରି ଆସ" ଭଳି ପ୍ରସିଦ୍ଧ ବଚନିକାକୁ ଲେନିନ୍ ନୂତନ ଅର୍ଥମଣ୍ଡିତ କରିଥିଲେ । (ଜେ. ଏମ କୋହେନ, ଏମ. ଜେ. କୋହେନ୍ ପେଙ୍ଗୁଇନ ଡ଼ିକସିନାରୀ ଅଫ୍ କୋଟେସନସ, ଲଣ୍ଡନ ୧୯୭୦, ପୃ : ୧୨୯) ।

ପ୍ରକୃତ ବିପ୍ଳବୀମାନେ ସୁବିଧାବାଦୀମାନଙ୍କ ସହିତ ମିଶି ଯାଆନ୍ତୁ ବୋଲି ଯେଉଁମାନେ ଚାହୁଁଥିଲେ ସେମାନଙ୍କୁ ଜବାବ୍ ଦେଇ ଲେନିନ୍ ଲେଖିଥିଲେ : "ସବୁଦିନ ପାଇଁ ଆଶା ପରିହାର କର ! ଆମେ କୌଣସି ମିଳାମିଶାରେ ରାଜି ହେବୁନାହିଁ ।" (ଭି. ଆଇ. ଲେନିନ, ରଚନାବଳୀ, ୧୬ଶ ଖଣ୍ଡ, ପୃ : ୫୫୭)

ଦାନ୍ତେଙ୍କ ଉକ୍ତି ସକଳ ଆଶା ହରାଇବାର ଅର୍ଥ, ଶେଷ ସୀମା ପାର ହୋଇ ପଡ଼ିବା ପରେ ଆଉ ଫେରିବାର ଆଶା ନ ଥିବାର ଅର୍ଥ ପ୍ରକଟିତ କରୁଥିଲା । ଲେନିନ୍ ଏହାକୁ ବ୍ୟବହାର କରିଥିଲେ ଅଜେୟ ଶକ୍ତି, ସାହସ ଓ ସଂଗ୍ରାମ ଚଳାଇଯିବାର ସଂକଳ୍ପକୁ ବ୍ୟକ୍ତ କରିବା ପାଇଁ ।

ତାତ୍ତ୍ୱିକ ସନ୍ଦର୍ଭ ରଚନା, ରାଜନୈତିକ ବିଷୟ ବର୍ଣ୍ଣନା ଓ ଐତିହାସିକ ଘଟଣାବଳୀର କଳନା କରିବା ଅବସରରେ ମାର୍କସ, ଏଙ୍ଗେଲସ ଏବଂ ଲେନିନ ସେମାନଙ୍କର ରଚନାବଳୀରେ ବହୁ ସାହିତ୍ୟିକ ଉକ୍ତି ବ୍ୟବହାର କରିବାର ଦେଖାଯାଏ ।

ସାହିତ୍ୟିକ ସୂକ୍ତ ବ୍ୟବହାର କରିବାର ମାର୍ଗ କଥା ବିଚାର କଲାବେଳେ ଭିନ୍ନ ଭିନ୍ନ ପଦ୍ଧତି ମଧ୍ୟରେ ସୀମାରେଖା ଟାଣିବା ବା ପରସ୍ପରକୁ ବିଚ୍ଛିନ୍ନ କରିବା କଷ୍ଟକର । କେବଳ ସୁବିଧା ଦୃଷ୍ଟିରୁ ମନମୁଖୀ ଭାବେ ଏହା କରାଯାଇ ପାରେ । ଅନେକ କ୍ଷେତ୍ରରେ କେବଳ ସାହିତ୍ୟିକ ସୂକ୍ତ ବ୍ୟବହାର କରିବାର କୌଣସି କୌଣସି ପଦ୍ଧତିର ପ୍ରାଧାନ୍ୟକୁ ଆମେ ଗ୍ରାହ୍ୟ କରିପାରିବା ମାତ୍ର ।

ସାହିତ୍ୟ, ସାମ୍ବାଦିକତା ଓ ସ୍ମୃତିଗାଥାର ସବୁତକ ପଦ୍ଧତିକୁ ଆୟତ୍ତ କରିବା ସହଜ କଥା ନୁହେଁ । ଏଥିପାଇଁ ସାତତ କଠିନ ଶ୍ରମ ଲୋଡ଼ା ଓ ପ୍ରତ୍ୟେକଟି ପଠିତ ପୁସ୍ତକର ବିଶ୍ଳେଷଣ ଲୋଡ଼ା । ସେଥିପାଇଁ ପେନସିଲଟିଏ ହାତରେ ଧରି ପଢ଼ିବାର ଅଭ୍ୟାସ କରିବା ଦରକାର, ମନୋଯୋଗପୂର୍ବକ ପଢ଼ିବା ଓ ମାର୍କସବାଦ-ଲେନିନବାଦର ସାଧାରଣ ତାତ୍ତ୍ୱିକ ମୂଳନୀତିଗୁଡ଼ିକୁ ସାମାଜିକ ତଥା ରାଜନୈତିକ ସହିତ ସମ୍ପୃକ୍ତ କରିବା ଦରକାର ।

୪ର୍ଥ ପ୍ରସଙ୍ଗ

# ରାଜନୈତିକ ପାଠଚକ୍ର ଓ ସ୍ୱ-ଶିକ୍ଷଣ

ସମାଜବାଦୀ ବିପ୍ଳବର ବିଜୟ ଶ୍ରମଜୀବୀମାନଙ୍କ ସମ୍ମୁଖରେ ବୈଜ୍ଞାନିକ ବିକାଶ ପାଇଁ ପ୍ରଚୁର ସୁଯୋଗ ଉନ୍ମୋଚିତ କରିଛି । ବୈଜ୍ଞାନିକ ଜ୍ଞାନକୁ ସେମାନଙ୍କ ହାତ ପାଖାକୁ ନେଇ ଆସିଛି । ଶିକ୍ଷା କ୍ଷେତ୍ରରେ ପ୍ରଥମ କରି ଲୋକଙ୍କର ବୈଜ୍ଞାନିକ ଦୃଷ୍ଟିକୋଣ ସୃଷ୍ଟି କରିବା ଓ ବିଶ୍ୱ ବିକାଶର ତଥା ବୈପ୍ଳବିକ ରୂପାନ୍ତରରୁ ବାସ୍ତବ ନିୟମମାନ ଶିକ୍ଷା ଦେବା ଏକ ସରକାରୀ ନୀତିରେ ପରିଣତ ହେଲା । ମାର୍କସବାଦ ଲେନିନବାଦ ତତ୍ତ୍ୱର ଶିକ୍ଷାଦାନ ଉଚ୍ଚତର ବିଶେଷ ଧରଣର ମାଧ୍ୟମିକ ବିଦ୍ୟାଳୟ, ପାର୍ଟି ଓ ଟ୍ରେଡ୍ ୟୁନିୟନ ବିଦ୍ୟାଳୟ ଏବଂ ଯୁବ ବିଦ୍ୟାଳୟମାନଙ୍କରେ ପ୍ରବର୍ତ୍ତିତ ହୋଇଛି । ରାଜନୈତିକ ପାଠଚକ୍ର-ମାନଙ୍କରେ ହଜାର ହଜାର ଲୋକ ମାର୍କସବାଦ ଲେନିନବାଦର ମୂଳସୂତ୍ରଗୁଡ଼ିକୁ ଶିକ୍ଷା କରିବାରେ ସୁଯୋଗ ଲାଭ କରୁଛନ୍ତି ।

ଅଭିଜ୍ଞ ଶିକ୍ଷକମାନଙ୍କ ତତ୍ତ୍ୱାବଧାନରେ ମାର୍କସବାଦ-ଲେନିନବାଦ ତତ୍ତ୍ୱର ଶିକ୍ଷା ଅଧିକ ସଙ୍ଗଠିତ, ଶୃଙ୍ଖଳିତ ଓ ସାରଗର୍ଭକ ହୋଇଥାଏ । ଶିକ୍ଷାୟତନ ଓ ପାଠଚକ୍ରମାନଙ୍କରେ ଶିକ୍ଷାର୍ଥୀମାନେ ଅଧିକ ବସ୍ତୁଗୁଡ଼ିକ ଉପରେ ନୂତନ ଜ୍ଞାନ ଶିକ୍ଷକମାନଙ୍କର ଶିକ୍ଷାଦାନ-ଭାଷଣରୁ ଲାଭକରିଥାନ୍ତି । ଶିକ୍ଷାର୍ଥୀମାନେ କେତେ ଗ୍ରହଣକଲେ ତାହା ଆଲୋଚନା ଚକ୍ରମାନଙ୍କରେ ପରୀକ୍ଷିତ ହୁଏ । ମାର୍କସବାଦ-ଲେନିନବାଦର ମୂଳନୀତିଗୁଡ଼ିକ ଉପରେ ଶିକ୍ଷାର୍ଥୀ କେତେ ଗଭୀର ଜ୍ଞାନ ଲାଭ କରିଛନ୍ତି ତାହା ଜାଣିବା ପାଇଁ ନାନାବିଧ ପରୀକ୍ଷା କରାଯାଏ ।

ଶିକ୍ଷାଦାନ ପାଇଁ ରହିଥିବା ପ୍ରଧାନ ଆଙ୍ଗିକଗୁଡ଼ିକୁ ଦେଖାଯାଉ ।

## (୧) ଭାଷଣ

ଶିକ୍ଷକ ବା ବକ୍ତା ଭାଷଣ ଦେଉଥିବାବେଳେ ଶିକ୍ଷାର୍ଥୀଙ୍କ କାର୍ଯ୍ୟ ଏକ ଜଟିଳ ବୌଦ୍ଧିକ ପ୍ରୟାସ । ଏହା ଭାଷଣଲବ୍ଧ ଜ୍ଞାନକୁ ଅବହିତ ହେବା, ହୃଦୟଙ୍ଗମ କରିବା ଲିପିବଦ୍ଧ କରିବା ଏବଂ ସ୍ମୃତିପଟରେ ଗଚ୍ଛିତ କରିବା ଆଦି ସକ୍ରିୟ ଓ ସୃଜନାତ୍ମକ କାର୍ଯ୍ୟ ।

ଯେଉଁମାନେ ଅଧ୍ୟୟନର ଅଭିଜ୍ଞତା ହାସଲ କରିନଥିବା ଶ୍ରୀକଶ୍ରେଣୀର ଶିକ୍ଷାର୍ଥୀ ସେମାନଙ୍କ ପକ୍ଷେ ଶୁଣୁଥିବା ଭାଷଣର ସାରାଂଶ କରିବା ଏକ ଦୁରୂହ ବ୍ୟାପାର—ବିଶେଷକରି ପ୍ରଥମେ ପ୍ରଥମେ । ସେମାନଙ୍କ ପକ୍ଷେ ପ୍ରୟୋଜନ ହେଉଛି ଅପ୍ରାସଙ୍ଗିକ ଚିନ୍ତାଧାରା ଓ ବିଷୟଗୁଡ଼ିକୁ ବାଦ ଦେଇ ଦେଇ ଅଧିତ ବିଷୟବସ୍ତୁ ଉପରେ ମନୋନିବେଶ କରିବା ଓ ସେମନ୍ତନ କରିବା । ଭାଷଣ ସମୟରେ ଛାତ୍ର କେବଳ ଯେ ନୂତନ ଲବ୍ଧ ଜ୍ଞାନ ବା ତଥ୍ୟକୁ ସଜାଗ ମନରେ ଗ୍ରହଣ କରିବେ ତାହା ନୁହେଁ, ସେଥିସହିତ ନିଜ ଖାତାରେ ପ୍ରୟୋଜନୀୟ ଟିପ୍ପଣୀ ଲେଖି ରଖିବେ । ଏଥିପାଇଁ ବେଶ ସ୍ମୃତିଶକ୍ତି ଓ ଶାରୀରିକ ଉଦ୍ୟମ ଲୋଡ଼ା, ଅଭିନିବେଶ ଓ ନିପୁଣିତତା ଲୋଡ଼ା, ନୈପୁଣ୍ୟ ଲୋଡ଼ା ।

ଭାଷଣ କାଳରେ ଛାତ୍ରର ପ୍ରୟାସ ଫଳପ୍ରଦ ହେବାକୁ ହେଲେ ତାଙ୍କୁ ଶିକ୍ଷାର ଲକ୍ଷ୍ୟ ଏବଂ ତତ୍ସମ୍ପର୍କୀୟ ବୈଜ୍ଞାନିକ କର୍ତ୍ତବ୍ୟ ବିଷୟରେ ଅବହିତ ହେବାକୁ ହେବ । ଏହି କଥାଟିକୁ ମନରେ ରଖିଲେ ଛାତ୍ର ଭାଷଣପ୍ରତି ନିବିଡ଼-ଭାବରେ ମନୋଯୋଗ ଦେଇପାରିବେ ଓ ଏହାର ପ୍ରୟୋଜନୀୟ ଅଂଶଗୁଡ଼ିକୁ ଟିପି ରଖିପାରିବେ । ଭାଷଣ କାଳରେ ଫଳପ୍ରଦ କାର୍ଯ୍ୟ ପାଇଁ ସବୁଠାରୁ ବେଶି ଆବଶ୍ୟକ ହେଉଛି ସାବଧାନତା ସହକାରେ ଓ ସମ୍ୟକଭାବରେ ଭାଷଣର ସାରାଂଶ ରଚନା କରିବା ଛାତ୍ରଭାଷଣଶୁଣିବା ଅବକାଶରେ ସେଥିରୁ ତାର ମୌଳିକ ଅବଧାରଣା, ନିର୍ଦ୍ଧାରଣ, ଯୁକ୍ତି, ଆଦିକୁ ନିର୍ଭୁଲଭାବେ ବାଛି ଟିପି ରଖିବା ପ୍ରୟୋଜନ ।

ନୂତନ ବିଷୟବସ୍ତୁଟିଏ ଶୁଣିଲାବେଳେ ସେ ସମ୍ପର୍କରେ ଆଗରୁ କଣ ଅଧ୍ୟୟନ କରିଛନ୍ତି ଓ କି ଜ୍ଞାନ ହାସଲ କରିପାରିଛନ୍ତି ତାହାକୁ ମନେ ମନେ ଏଥି ସହିତ ସଂଯୁକ୍ତ କରିବା ଛାତ୍ରଙ୍କ ପକ୍ଷେ ଉପଯୋଗୀ ଅଟେ । ଭାଷଣ କରିଥାରେ ଶିକ୍ଷକ କି ନୂତନ ଚିନ୍ତାଧାରା ଉନ୍ମୋଚିତ କରିବାକୁ ଯାଉଛନ୍ତି ଓ ବିଶଦଭାବରେ ଚର୍ଚ୍ଚା କରୁଛନ୍ତି, ସେଥିରୁ ମିଳୁଥିବା ନୂତନ ତଥ୍ୟ କିପରି ନିଜର ବ୍ୟକ୍ତିଗତ ଅଭିଜ୍ଞତା ଓ ଜୀବନର ଗତି ପଥରେ ଲବ୍ଧ ହୋଇଥିବା ଘଟଣାବଳୀ ସହିତ ସଂଯୁକ୍ତ ହୋଇପାରିବ ତାହା ଧରି ପାରିଲେ ଲବ୍ଧ ଜ୍ଞାନ ଅଧିକ ବଳିଷ୍ଠ ହୋଇ ପାରିବ । ଏହିଭଳି କାର୍ଯ୍ୟ ଯୁକ୍ତିଯୁକ୍ତ ଚିନ୍ତାର ବିକାଶ ପାଇଁ ପ୍ରକୃତ ଅବଲମ୍ବନ ଅଟେ । ଏଇଥିରୁ ନିଜ ଚିନ୍ତାକୁ ଯୁକ୍ତିଯୁକ୍ତ ଭାବେ ଉପସ୍ଥାପନା କରିବାର ଶିକ୍ଷା ମିଳେ ।

ଛାତ୍ର ଯଦି ଶିକ୍ଷକଙ୍କ ଭାଷଣକୁ ମନୋଯୋଗ ସହକାରେ ଶୁଣିବେ ତାହାଲେ ସେ ଦେଖିପାରିବେ ଯେ, ଶିକ୍ଷକ ଲକ୍ଷ୍ୟଗୁଡ଼ିକୁ କିପରି ନିର୍ଣ୍ଣୟ କରୁଛନ୍ତି, କର୍ତ୍ତବ୍ୟଗୁଡ଼ିକୁ କିପରି ଚିହ୍ନିତ କରୁଛନ୍ତି, ସମସ୍ୟାଗୁଡ଼ିକୁ କିପରି ଉପସ୍ଥାପନା

କରୁଛନ୍ତି, ପ୍ରତିପାଦନ ଉଦ୍ଦେଶ୍ୟରେ କିଭଳି ଯୁକ୍ତି ଓ ଦୃଷ୍ଟାନ୍ତ ପ୍ରୟୋଗ କରୁଛନ୍ତି, ତାତ୍ତ୍ୱିକ ନୀତିଗୁଡ଼ିକୁ ବାସ୍ତବ କାର୍ଯ୍ୟ ସହିତ କିପରି ସଂଯୁକ୍ତ କରୁଛନ୍ତି, ଆଦର୍ଶଗତ ବିରୋଧୀମାନଙ୍କର ତତ୍ତ୍ୱ ଓ ଅବଧାରଣାକୁ କିପରି ସମାଲୋଚନା କରୁଛନ୍ତି, ଇତ୍ୟାଦି । ଏଗୁଡ଼ିକୁ ଲକ୍ଷ୍ୟ କରିପାରିଲେ ଛାତ୍ର ନିଜେ ଏହି କାର୍ଯ୍ୟଗୁଡ଼ିକ କରିବା ପାଇଁ ନୈପୁଣ୍ୟ ଲାଭ କରିପାରିବେ ।

ଶ୍ରେଣୀ ଗୃହରେ ଛାତ୍ରର ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହେଉଛି ଶିକ୍ଷକ ଦେଉଥିବା ଭାଷଣରୁ ସଂକ୍ଷିପ୍ତ ସାର ବାହାର କରିବା । ଏହା ଦ୍ୱାରା ସେ ନିଜେ ଶୃଙ୍ଖଳିତ ହୁଅନ୍ତି ଓ ତାଙ୍କର ଧ୍ୟାନ ତୀକ୍ଷ୍ଣ ହୁଏ । ସଂକ୍ଷିପ୍ତ ସାର ବାହାର କରିବା କାର୍ଯ୍ୟରେ ଦୃଷ୍ଟି ଶ୍ରୁତି ଏବଂ ପେଶୀଗତ ଅନୁଭୂତି ଏକାକାର ହୋଇଥାଏ । ଏତଦ୍ୱାରା ଛାତ୍ରର ଅଭିନିବେଶ ଆହୁରି ବଢ଼େ ଏବଂ ସ୍ମରଣ ଶକ୍ତି ଆହୁରି ବଳିଷ୍ଠ ହୁଏ । ଆମେ ଜାଣୁ ଯେ, ତଥ୍ୟ ଓ ସମ୍ବାଦ ଗ୍ରହଣ କାର୍ଯ୍ୟରେ ଯେତେ ଅଧିକ ଅନୁଭୂତି ପ୍ରବଣ ଇନ୍ଦ୍ରିୟ ଅଂଶ ଗ୍ରହଣ କରିବେ, ସେ ତଥ୍ୟ ଓ ଜ୍ଞାନ ସେତେ ବେଶୀ ଦୋରସ୍ତ ହେବ ।

ଅତଏବ ସଂକ୍ଷିପ୍ତ ସାର ବାହାର କରିବା ଦ୍ୱାରା ଛାତ୍ରର ମନୋଯୋଗ ସନ୍ନିବିଷ୍ଟ ହେବା ସଙ୍ଗେ ସଙ୍ଗେ ଅଭିନିବେଶ ଓ କର୍ମ କ୍ଷମତା ବୃଦ୍ଧି ପାଏ ।

ଭାଷଣର ସାରାଂଶ ବାହାର କରିବା ଦ୍ୱାରା ଛାତ୍ର ଆହୃତ ଜ୍ଞାନକୁ ପରସ୍ପର ସମ୍ବନ୍ଧିତ କରି ସଞ୍ଚିତ ରଖିବାକୁ ସମର୍ଥ ହୁଅନ୍ତି । ଉତ୍ତମ ରୂପେ ଲିଖିତ ଏକ ସାରାଂଶ ସେହି ବିଷୟର ଉତ୍ତରୋତ୍ତର ଚର୍ଚ୍ଚା ପାଇଁ ଦିଶାରୀ ରୂପେ କାର୍ଯ୍ୟ କରିଥାଏ । ମାର୍କସବାଦ-ଲେନିନବାଦ ସମ୍ପର୍କିତ ଚିରସ୍ମୃତ ଗ୍ରନ୍ଥ ଏବଂ ଅନ୍ୟାନ୍ୟ ବୈଜ୍ଞାନିକ ରାଜନୈତିକ ଓ ସାମାଜିକ ସାହିତ୍ୟ ଅଧ୍ୟୟନ କରି ଆହରଣ କରିଥିବା ଜ୍ଞାନକୁ ଶ୍ରେଣୀ ବିଭକ୍ତ କରିବାରେ ଏହା ସାହାଯ୍ୟ କରେ ।

ଶିକ୍ଷକଙ୍କ ଭାଷଣକୁ ଆକ୍ଷରିକ ଭାବେ ଟିପି ରଖିବାର ଆବଶ୍ୟକତା ନାହିଁ । ଏହା କରିବା ତ କଷ୍ଟସାଧ୍ୟ । ପୁଣି ମୂଲ୍ୟହୀନ । ଶିକ୍ଷାର୍ଥୀ ଭାଷଣ ଉତାରିବାରେ ଯେତେ ସମୟ ଦେବେ ସେତେ ସମସ୍ତ ବିଷୟଟିକୁ ବୁଝିବା ଓ ହୃଦୟଙ୍ଗମ କରିବା ପାଇଁ ନିଅଣ୍ଟ ପଡ଼ିବ । ପୁଣି ସମ୍ପୂର୍ଣ୍ଣ ଭାଷଣଟିକୁ ଉତାରିଲେ ବିଶ୍ଳେଷଣ ପାଇଁ ମଧ୍ୟ ଅଧିକ ସମୟ ଆବଶ୍ୟକ ହେବ । ଏଭଳି ଆକ୍ଷରିକ ବିବରଣୀ ଆଉ ବୈଜ୍ଞାନିକ ଅବଧାରଣା ଶିକ୍ଷକଙ୍କ ଚିନ୍ତାଧାରା ଓ ବିଷୟବସ୍ତୁ ଉପରେ ଛାତ୍ରଙ୍କ ମନନର ସଂଶ୍ଳେଷଣ ରୂପେ କାର୍ଯ୍ୟ କରିବାର ଭୂମିକା ହରାଏ । ପ୍ରଥମରୁ ହିଁ ସବୁ କାମ କରିବାକୁ ହେବ : ଭାଷାରେ ପ୍ରଧାନ ବକ୍ତବ୍ୟଗୁଡ଼ିକୁ ବାଛିବା, ଯୁକ୍ତିଗୁଡ଼ିକୁ ବାହାର କରିବା, ପ୍ରମାଣଗୁଡ଼ିକୁ କ୍ରମାନୁଗତ କରି ରଖିବା ଇତ୍ୟାଦି ।

ଶିକ୍ଷକ ଯେଉଁ ବାକ୍ୟଗୁଡ଼ିକ ଡାକିବେ କେବଳ ସେହି ବାକ୍ୟଗୁଡ଼ିକୁ ଆକ୍ଷରିକଭାବେ ଟିପି ରଖିବାକୁ ହେବ । ସେ ସଂଜ୍ଞା, ମୂଳନୀତି, ନିଷ୍ପନ୍ନ ପ୍ରଣାଳୀ ଇତ୍ୟାଦି ଡାକି ପାରନ୍ତି । ଭାଷଣ ଶେଷବେଳକୁ ଶିକ୍ଷକ ଯେଉଁ ସାମାନ୍ୟୀକରଣ ଓ ଉପସଂହାର କରିବେ ସେଥିପ୍ରତି ବିଶେଷ ଧ୍ୟାନ ଦେବାକୁ ହେବ । ଅବଶିଷ୍ଟ ବିଷୟବସ୍ତୁକୁ ଶିକ୍ଷାର୍ଥୀ ନିଜ ଭାଷାରେ ସଂକ୍ଷେପରେ ଟିପି ରଖିବେ ।

ସେହିଦିନ ଟିପ୍‌ପଣୀଟିକୁ ଆଉଥରେ ଦେଖିନେବା ବାଞ୍ଛନୀୟ । ତାହାହେଲେ ବିଷୟବସ୍ତୁକୁ ମନେରଖିବା ପାଇଁ, ଆବଶ୍ୟକୀୟ ସଂଶୋଧନ କରିବା ପାଇଁ ଅବୋଧ ରହିଥିବା ବିଷୟକୁ ଚିହ୍ନଦେବା ପାଇଁ ଶିକ୍ଷାର୍ଥୀଙ୍କ ପକ୍ଷେ ସୁବିଧା ହେବ । ଏହି ପର୍ଯ୍ୟାୟରେ ମାର୍ଜିନ୍‌ରେ ଟିପ୍‌ପଣୀର ଗୋଟିଏ ଯୋଜନା କରି ଯୁକ୍ତିଯୁକ୍ତ ବିଶ୍ଳେଷଣ କରିବା ବିଧେୟ । ବିଶ୍ଳେଷିତ ଓ ଉତ୍ତମ ରୂପେ ପ୍ରସ୍ତୁତ ସଂକ୍ଷିପ୍ତସାର ଭବିଷ୍ୟତରେ ଆଲୋଚନା ଓ ଚର୍ଚ୍ଚା ପାଇଁ ସାହାଯ୍ୟକାରୀ ହୋଇଥାଏ ।

## (୨) ଆଲୋଚନା ଚକ୍ର

ଆଲୋଚନା ଚକ୍ରରେ ଭାଷଣ ଦେବା ବା ଆଲୋଚନାରେ ଭାଗ ନେବା ପାଇଁ ପ୍ରସ୍ତୁତ ନିମ୍ନମତେ କରାଯାଇଥାଏ ।

ପ୍ରଥମେ ଭାଷଣର ସଂକ୍ଷିପ୍ତସାରକୁ ପଢ଼ । ଦ୍ୱିତୀୟରେ ତତ୍‌ସମ୍ପର୍କିତ ପାଠ୍ୟପୁସ୍ତକର ସାହାଯ୍ୟ ନିଅ । ଏହାଦ୍ୱାରା ତୁମେ ସମର୍ଥ ହେବ ଏକ ପକ୍ଷରେ ଅଧିତ ବସ୍ତୁ ଉପରେ ଅଧିକ ଜାଣିବାକୁ ଓ ଅନ୍ୟ ପକ୍ଷରେ ଶିକ୍ଷକଙ୍କ ଭାଷଣକୁ ପାଠ୍ୟପୁସ୍ତକ ସହିତ ତୁଳନା କରି ଏକ ବିବେଚନାମୂଳକ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବାକୁ । ଏ କ୍ଷେତ୍ରରେ ସ୍ୱଭାବତଃ ବିଷୟବସ୍ତୁର ତଥ୍ୟ ସମ୍ବଳିତ ହୋଇଥିବା ପାଠ୍ୟପୁସ୍ତକର ବକ୍ତବ୍ୟ ଭାଷଣରେ ଶିକ୍ଷାମୂଳକ ଲକ୍ଷ୍ୟ ଓ ଶ୍ରୋତୃମଣ୍ଡଳୀର ବୈଶିଷ୍ଟ୍ୟ ଅନୁଯାୟୀ ପରିପୁଷ୍ଟ, ପ୍ରଗାଢ଼ ଓ ସୁନିର୍ଦ୍ଦିଷ୍ଟ ହୋଇଥାଏ ।

ଆଲୋଚନା ଚକ୍ର ପାଇଁ ପ୍ରସ୍ତୁତି ପର୍ବରେ ପ୍ରଧାନ ସୋପାନ ହେଉଛି ମୂଳ ଉତ୍ସଗୁଡ଼ିକ ଉପରେ ସ୍ୱାଧୀନ ଚର୍ଚ୍ଚା । ଏହି ମୂଳ ଉତ୍ସଗୁଡ଼ିକ ହେଲେ ମାର୍କସବାଦ-ଲେନିନବାଦର ଚିରସ୍ଥିତ ଗ୍ରନ୍ଥ, ପାର୍ଟି ଦଲିଲ, ବିଜ୍ଞାନ, ରାଜନୀତି, ଓ ସମାଜ ନୀତି ଉପରେ ସ୍ୱତନ୍ତ୍ର ଭାବେ ଲିଖିତ ସାହିତ୍ୟ ।

ମାର୍କସବାଦ-ଲେନିନବାଦର ପ୍ରତିଷ୍ଠାତାମାନଙ୍କ ଦ୍ୱାରା ପ୍ରଣୀତ ଗ୍ରନ୍ଥ, ପାର୍ଟି ତଥା ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ଦଲିଲଗୁଡ଼ିକ ଅଧ୍ୟୟନ କାଳରେ

ସୃଜନଶୀଳ ଦୃଷ୍ଟିଭଙ୍ଗୀ ଗ୍ରହଣ କରିବାକୁ ହେବ । ଏହି ଗ୍ରନ୍ଥମାନ ପଢ଼ି ବିଷୟ-ବସ୍ତୁକୁ ନିଜ ଚେତନାରେ ମିଶାଇ ଦେବାକୁ ହେବ ଓ ବୈଜ୍ଞାନିକ ବିଶ୍ଲେଷଣ, ସାମାଜିକ ପ୍ରପଞ୍ଚ ଏବଂ ପ୍ରକ୍ରିୟାର ବିଶ୍ଳେଷଣ ପାଇଁ ସେଗୁଡ଼ିକର ଅବଦାନ, ସମାଜବାଦ ନିର୍ମାଣ କାର୍ଯ୍ୟରେ ଦେଖା ଦେଉଥିବା ସମସ୍ୟା ଗୁଡ଼ିକର ସମାଧାନ ପାଇଁ ଅବଦାନ ଆଦିର ମୂଲ୍ୟାୟନ କରିବାକୁ ହେବ । ସାମ୍ପ୍ରତିକ ଜୀବନର ସକଳ କ୍ଷେତ୍ରରେ ପାର୍ଟିର ନୀତିକୁ ସମର୍ଥନ ଦେବାରେ ଏବଂ ଜନସାଧାରଣଙ୍କ ସୃଜନାତ୍ମକ ତଥା ଗଠନମୂଳକ କର୍ମକାଣ୍ଡ ପାଇଁ ଫଳପ୍ରଦ ଆଙ୍ଗିକ ନିରୂପଣ କରିବାରେ ସେଗୁଡ଼ିକର ବାସ୍ତବ ମୂଲ୍ୟକୁ ମଧ୍ୟ ଚିହ୍ନଟ କରିବାକୁ ହେବ ।

ମାର୍କସବାଦ ଲେନିନବାଦର ମୂଳ ଗ୍ରନ୍ଥଗୁଡ଼ିକ ଉପରେ ଏତାଦୃଶ ଚର୍ଚ୍ଚା କରିବା ଅର୍ଥ ତହିଁରେ ପରିବେଷିତ ସନ୍ଦର୍ଭ ଓ ମୂଳ ନୀତି ଗୁଡ଼ିକର ପ୍ରତିପାଦନ ଏବଂ ବ୍ୟାଖ୍ୟାର ଯୌକ୍ତିକତାକୁ ଉପଲବ୍ଧି କରିବା, ବାସ୍ତବ କ୍ଷେତ୍ରରେ ତଥା ମାର୍କସବାଦ-ଲେନିନବାଦର ପବିତ୍ରତା ରକ୍ଷା ପାଇଁ ମତାଦର୍ଶଗତ ଯୁଦ୍ଧରେ ନୈପୁଣ୍ୟ ହାସଲ କରିବା ।

ଚୟିତ ଗ୍ରନ୍ଥ ଓ ସମସାମୟିକ ବୈଜ୍ଞାନିକ, ସାମାଜିକ ଏବଂ ରାଜନୈତିକ ସାହିତ୍ୟ ସ୍ୱାଧୀନଭାବେ ଅଧ୍ୟୟନ କରିବାର ପଦ୍ଧତିଗତ ନୀତି ଓ ନିୟମ ସବୁ ପ୍ରକାର ଶିକ୍ଷଣ ପ୍ରୟାସ ପାଇଁ ପ୍ରଯୋଜ୍ୟ । ମନେ ରଖିବା ଉଚିତ ଯେ ଆଲୋଚନା ଚକ୍ର, ପାଠଚକ୍ର, ତର୍କସଭା, ସମ୍ମିଳନୀ ଆଦି ପାଇଁ ପ୍ରସ୍ତୁତ ହେବାବେଳେ ଏକାଗ୍ରତା ଅପରିହାର୍ଯ୍ୟ । ଏଣୁ ଯୋଜନା ଓ କାର୍ଯ୍ୟକ୍ରମ ଅନୁଯାୟୀ ଏବଂ ଆଲୋଚ୍ୟ ବସ୍ତୁର ସମସ୍ୟାଗୁଡ଼ିକୁ ନେଇ ସଂକ୍ଷିପ୍ତସାର ପ୍ରସ୍ତୁତ କରିବାକୁ ହେବ । ଅଧ୍ୟୟନ ପାଇଁ ନିର୍ଦ୍ଦେଶିତ ଗ୍ରନ୍ଥଗୁଡ଼ିକର ଅଧ୍ୟୟନ ସେହି ମନୋଭାବରୁହିଁ କରିବାକୁ ହେବ ।

ଚର୍ଚ୍ଚିତ ସମସ୍ୟାଟିର ଉପାଦାନକୁ ଉନ୍ମୋଚନ କରିବାର ଦୃଷ୍ଟିଭଙ୍ଗୀ ନେଇ ବିଷୟବସ୍ତୁର ବିଶ୍ଳେଷଣ କରାଯାଏ । ଶିକ୍ଷାଦାନ କାଳର ଭାଷଣ ଓ ଅଧିତ ପୁସ୍ତକଗୁଡ଼ିକର ସଂକ୍ଷିପ୍ତସାର ଯଦି ପ୍ରକୃଷ୍ଟ ରୂପେ ପ୍ରସ୍ତୁତ କରାଯାଇଥାଏ, ତାହା-ହେଲେ ଏ କାର୍ଯ୍ୟ ସହଜ ହୁଏ । ମାର୍ଜିନରେ କରାଯାଇ ଥିବା ଯୋଜନା ଉପରେ ଆଖି ପକାଇଗଲେ ପ୍ରୟୋଜନୀୟ ବିଷୟବସ୍ତୁ ସହଜରେ ମିଳିଯାଏ ଏବଂ ତାକୁ ଅନୁଶୀଳନର ସାଧାରଣ ଯୋଜନାର ଯଥା ସ୍ଥାନରେ ଅନ୍ତର୍ଭୁକ୍ତ କରିହୁଏ ।

ତା'ପରେ ଭାଷଣର ପ୍ରତ୍ୟେକଟି ପ୍ରଶ୍ନର ସ୍ପଷ୍ଟୀକରଣ ପାଇଁ ଏକ କାର୍ଡ କାଟି ଯୋଜନା ପ୍ରଣୟନ କରିବେ ଓ ନିର୍ବାଚିତ ବସ୍ତୁକୁ ସେହି ଯୋଜନା ଅନୁଯାୟୀ ସଜାଇବେ ।

ଗୋଟିଏ ରିପୋର୍ଟ କି ଗବେଷଣାପତ୍ର ପ୍ରସ୍ତୁତ କଲାବେଳେ ବିଷୟବସ୍ତୁ ଓ ସମସ୍ୟାର ପରିସରକୁ ନିର୍ଦ୍ଦିଷ୍ଟ କରି ଦିଅନ୍ତୁ, ପ୍ରଧାନ ନିର୍ଦ୍ଦାରଣଗୁଡ଼ିକୁ ସୂତ୍ରାକାର ପ୍ରକାଶ କରନ୍ତୁ, ତା'ପରେ ସେଗୁଡ଼ିକୁ ବିଶ୍ଲେଷଣ ଓ ପ୍ରତିପାଦିତ କରନ୍ତୁ, କର୍ମାଚରଣ ସହିତ ସମ୍ପୃକ୍ତ କରନ୍ତୁ । ସେହିଭଳି ରିପୋର୍ଟରେ ଘଟଣାବଳୀର ସମଷ୍ଟିକୁ ଲିପିବଦ୍ଧ କରନ୍ତୁ, ବିଭିନ୍ନ ଗ୍ରନ୍ଥକାରଙ୍କ ରଚନାରୁ ଲାଭ କରିଥିବା ଭିନ୍ନ ଭିନ୍ନ ଦୃଷ୍ଟିକୋଣ, ଅବଧାରଣାକୁ ବିଶ୍ଲେଷଣ କରନ୍ତୁ ଏବଂ ନିଜର ଉପସଂହାର ବା ମୁଖ୍ୟ ସିଦ୍ଧାନ୍ତକୁ ସୂତ୍ରାକାରରେ ପ୍ରକାଶ କରନ୍ତୁ । ଏଭଳି ବିଶ୍ଳେଷଣ ଫଳରେ ସଂଶୟ ବା ମତାନୈକ୍ୟ ସୃଷ୍ଟି କରୁଥିବା ନିର୍ଦ୍ଦାରଣଗୁଡ଼ିକର ଗୁଣାଗୁଣ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସମ୍ଭବ ହୋଇଥାଏ ।

ପ୍ରତ୍ୟେକଟି ଭାଷଣ କେତେଗୁଡ଼ିଏ ପ୍ରୟୋଜନୀୟତା ପୂରଣ କରିବା ଆବଶ୍ୟକ :

(୧) ଏଥିରେ ଚର୍ଚ୍ଚିତ ବିଷୟର ତତ୍ତ୍ୱ, ବିଶ୍ଳେଷଣ ଓ ପ୍ରାସଙ୍ଗିକ ମୂଳ ନୀତିମାନ ସମ୍ବଳିତ ହେବ;

(୨) ଯେଉଁ ତାତ୍ତ୍ୱିକ ପ୍ରସ୍ତାବନା ଉପସ୍ଥାପିତ କରାଯାଇଥିବ ତାହାର ଦୃଷ୍ଟାନ୍ତମାନ ବାସ୍ତବ କ୍ଷେତ୍ରରୁ ଅର୍ଥାତ୍ ବିଜ୍ଞାନ ଓ ପ୍ରଯୁକ୍ତିବିଦ୍ୟାର ସାଫଲ୍ୟରୁ ଦେବାକୁ ହେବ;

(୩) ବୁର୍ଜୁଆ ତଥା ସଂସ୍କାରବାଦୀ ବିବାଦର୍ଶ, ଅନ୍ଧାନୁସରଣ, ସଂଶୋଧନ-ବାଦ ଆଦିର ଯୁକ୍ତି ସମ୍ବଳିତ ସମାଲୋଚନା ରହିଥିବ;

(୪) ବାସ୍ତବ କର୍ମକାଣ୍ଡ ପାଇଁ ମାର୍କସବାଦ-ଲେନିନବାଦ ତତ୍ତ୍ୱର ଗୁରୁତ୍ୱ ଏଥିରେ ପ୍ରତିପାଦିତ ହୋଇଥିବ । ଅଧିକନ୍ତୁ ଭାଷଣଟିରେ ମୌଳିକତା, ସମସ୍ୟାର ସମାଧାନ କଲେ ସୃଜନାତ୍ମକ ଦୃଷ୍ଟିଭଙ୍ଗୀ, ଶ୍ରେଣୀଭିତ୍ତିକ ଦୃଷ୍ଟିକୋଣ, ମାର୍କସବାଦୀ-ଲେନିନବାଦୀ ସିଦ୍ଧାନ୍ତଗୁଡ଼ିକ ଉପରେ ଅଟଳ ବିଶ୍ୱାସ ପ୍ରକଟିତ ହେଉଥିବ । ଭାଷଣର ସାହିତ୍ୟିକ ପ୍ରକାଶଭଙ୍ଗୀ ମଧ୍ୟ ଉତ୍ତମ ହେବା ଉଚିତ ।

ଯଦି ଆପଣ ପଢ଼ିଥିବା ସାହିତ୍ୟର ପ୍ରଧାନ ପ୍ରଧାନ ବୈଜ୍ଞାନିକ ତତ୍ତ୍ୱ ଓ ଅବଧାରଣା ଉପରେ ବିଶଦ ଚର୍ଚ୍ଚା କରନ୍ତି, ତା' ଉପରେ ନିଜର ମନ୍ତବ୍ୟ ଓ ମତାମତ ଦେଇ ତାକୁ ପୁଷ୍ଟ କରନ୍ତି ତାହା ହେଲେ ଆପଣଙ୍କ ଭାଷଣ ଅଧିକ ମୂଲ୍ୟବାନ୍ ହେବ । ଆପଣଙ୍କ ଭାଷଣ ବା ପ୍ରସ୍ତୁତ ନିବନ୍ଧରେ ଯଦି ଜରୁରୀ ସମସ୍ୟା-ମାନ ସମାଧାନ କରିବାର ନୂତନ ତଥ୍ୟ କି ପରାମର୍ଶ ଥାଏ ତାହାହେଲେ

ସେଇଟି ଶ୍ରୋତୃମଣ୍ଡଳୀ ଦ୍ୱାରା ଅଧିକ ଆଦୃତ ହେବ। ଚିନ୍ତା ପାଇଁ ଖୋରାକ ଯୋଗାଇ ପାରୁଥିବା ଓ ପ୍ରାଣବନ୍ତ ଆଲୋଚନା ପାଇଁ ପ୍ରେରଣା ସୃଷ୍ଟି କରୁଥିବା ଭଲ ଭାଷଣ ସ୍ୱଭାବତଃ ସଫଳ ଭାଷଣ ବୋଲି ବିବେଚିତ ହୋଇଥାଏ। ମାର୍ଜିତ ଭାଷାରେ ଯଦି ଉତ୍ଥାପିତ ଓ ସମାହୃତ ପ୍ରଶ୍ନଗୁଡ଼ିକର ସୂତ୍ର, ସୂତ୍ରଗୁଡ଼ିକର ପ୍ରକୃତି, ଦୃଷ୍ଟାନ୍ତଗୁଡ଼ିକର ଚୟନ, ତର୍କସିଦ୍ଧ ବ୍ୟାଖ୍ୟା ଆଦି ଉପସ୍ଥାପନ କରାଯିବ ତାହା ହେଲେ ଭାଷଣ ବା ନିବନ୍ଧ ଅଧିକ ମୂଲ୍ୟବାନ ହୋଇ ପାରିବ।

ସାଧାରଣ ପଦ୍ଧତିଗତ ପ୍ରୟୋଜନୀୟତା ଅନୁଯାୟୀ ଏବଂ ଶିକ୍ଷାର୍ଥୀ ଶ୍ରେଣୀର ସ୍ୱତନ୍ତ୍ର ବିଷୟ ଓ ଅନୁଶୀଳନୀର ଶିକ୍ଷାମୂଳକ ଲକ୍ଷ୍ୟ ଦୃଷ୍ଟିରୁ ଭାଷଣ ବା ନିବନ୍ଧର ବିଷୟବସ୍ତୁ ପ୍ରସ୍ତୁତ ହୋଇଥାଏ। କେତେକ ଭାଷଣ ପାଇଁ ଏକ ବିଶଦ ଯୋଜନା ଆକାରରେ ବିଷୟବସ୍ତୁ ପ୍ରସ୍ତୁତ କରନ୍ତି ଓ ଅନ୍ୟ କେତେକ ଲିଖିତ ଆକାରରେ ପ୍ରସ୍ତୁତ କରନ୍ତି। ଏ ଦୁଇଟି ରୂପକୁ ଗୋଟିଏ ବଦଳରେ ଗୋଟିଏ ବ୍ୟବହାର କରିବା ବାଞ୍ଛନୀୟ। ବିଶଦ ଯୋଜନାର ବ୍ୟବହାର ଆନ୍ଦୋଳନ ଏବଂ ପ୍ରଚାର କାର୍ଯ୍ୟରେ କର୍ମକୁଶଳତା ଏବଂ ସାଧାରଣ ସଭାରେ ଭାଷଣ ଦେବାର ନୈପୁଣ୍ୟ ହାସଲ କରିବା ପାଇଁ ସାହାଯ୍ୟ କରିଥାଏ। ଲିଖିତ ରୂପରେ ଗବେଷଣା କାର୍ଯ୍ୟ ପାଇଁ ଏବଂ ଚିନ୍ତାଧାରାକୁ ଲିପିବଦ୍ଧ କରିବା ପାଇଁ ନୈପୁଣ୍ୟ ଅର୍ଜନ ହୋଇଥାଏ।

ଭାଷଣ ବା ନିବନ୍ଧ ପ୍ରସ୍ତୁତ କଲାବେଳେ କେତେଗୁଡ଼ିଏ ସ୍ପଷ୍ଟ ନିର୍ଦ୍ଦିଷ୍ଟ କଥା ମଧ୍ୟ ପାଳନ କରିବାକୁ ହୋଇଥାଏ। ପ୍ରଥମେ ବିଷୟବସ୍ତୁର ଉପକ୍ରମଣିକା ଦେବାକୁ ହେବ, ଯେଉଁଥିରେ ବିଷୟବସ୍ତୁର ତାତ୍ପର୍ଯ୍ୟ ସୂଚିତ ହୋଇଥିବ। ତତ୍ପରେ ଗବେଷଣାର ପଦ୍ଧତିଗତ ନୀତିର ବର୍ଣ୍ଣନା ଏବଂ ଯେଉଁ ସୂତ୍ରରୁ ସାହାଯ୍ୟ ନିଆ ଯାଇଛି ସେଗୁଡ଼ିକର ସୂଚନା। ପୁଣି ଶେଷ କରିବାକୁ ହେବ ସଂକ୍ଷିପ୍ତ ଉପସଂହାରରେ, ଯେଉଁଥିରେ ଗବେଷଣାର ମୋଟାମୋଟି ଫଳ ଓ ପରବର୍ତ୍ତୀ ପ୍ରୟାସ ପାଇଁ କର୍ମଧାରା ସୂଚିତ ହୋଇଥିବ।

ଆପଣ ନିବନ୍ଧ ପାଠ ଓ ତଦନନ୍ତର ଆଲୋଚନାରେ ଅଂଶଗ୍ରହଣ କରି-ଦେଲେ ଆଲୋଚନାଚକ୍ରର କାର୍ଯ୍ୟ ଶେଷ ହୋଇଗଲା ନାହିଁ। ଆପଣଙ୍କ ଭାଷଣ ପରେ ଯେଉଁସବୁ ପ୍ରଶ୍ନ ପଚରାଗଲା ସେଗୁଡ଼ିକୁ ଲେଖି ରଖିବା ଉଚିତ। ଏଥିରୁ ଆପଣ ଆପଣଙ୍କ ପ୍ରସ୍ତୁତ ନିବନ୍ଧର ଦୋଷ ତ୍ରୁଟି ଜାଣି ପାରିବେ। ଆପଣଙ୍କ ନିବନ୍ଧ ଉପରେ ଅନ୍ୟମାନଙ୍କ ଆଲୋଚନା ଆପଣଙ୍କର ଶୁଣିବା ଉଚିତ ଓ ସେ ଆଲୋଚନାର ସାରାଂଶ କରିବା ଉଚିତ। ଆଲୋଚନା ଅବସରରେ ଶିକ୍ଷକ ଶ୍ରୋତାମାନଙ୍କ

ମନ୍ତବ୍ୟକୁ ବିଶ୍ଳେଷଣ କରି (ଗ୍ରହଣ କଲେ ବା ନ କଲେ) ତା'ର ମୂଲ୍ୟାୟନ ଉପସଂହାର ରୂପରେ କରିବା ବାଞ୍ଛନୀୟ । ପଚରା ଯାଇଥିବା ପ୍ରଶ୍ନଗୁଡ଼ିକର ପରିପ୍ରେକ୍ଷୀରେ ଛାତ୍ର ତାଙ୍କ ସଂକ୍ଷିପ୍ତସାରରେ ପ୍ରାସଙ୍ଗିକ ଟିପ୍ପଣୀ ଲେଖିବା ପ୍ରୟୋଜନ । ସେଥିରେ ପଚରା ଯାଇଥିବା ପ୍ରଶ୍ନଗୁଡ଼ିକର ସୂଚନା ଦେଇ ଆଲୋଚନାକାରୀମାନଙ୍କ ମନ୍ତବ୍ୟ ଓ ଶିକ୍ଷକଙ୍କ ଉପସଂହାରର ସାରମର୍ମ ରହିବା ପ୍ରୟୋଜନ ।

•

## (ଗ) ଅଗ୍ରଗତି ସମ୍ପର୍କରେ ତନଖି

ବିଷୟବସ୍ତୁକୁ ଛାତ୍ର ଅଧ୍ୟୟନ କରି କେତେଦୂର ହୃଦୟଙ୍ଗମ କଲେ ଓ ତାଙ୍କର ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର କେତେଦୂର ବିକାଶ ଘଟିଲା, ତାହା ତନଖି କରିବା ମାର୍କସବାଦ-ଲେନିନବାଦ ତତ୍ତ୍ୱର ଶିକ୍ଷା ପ୍ରୟାସରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଭଳି ତନଖି ଦ୍ୱାରା ଶିକ୍ଷାମୂଳକ କାର୍ଯ୍ୟ ସଂଗଠନ କରିବାରେ ରହି-ଯାଇଥିବା ଦୋଷତ୍ରୁଟି ବାହାର କରିହୁଏ ଓ ଅବିଳମ୍ବେ ଦୂର କରିବା ସମ୍ଭବ ହୁଏ ।

ଛାତ୍ର ମାର୍କସବାଦ-ଲେନିନବାଦର ତତ୍ତ୍ୱକୁ କିପରି ହୃଦୟଙ୍ଗମ କଲେ ଓ ତାର ମୂଳ ନୀତିଗୁଡ଼ିକୁ ନିଜର ବୈଜ୍ଞାନିକ ବୀକ୍ଷଣ ଏବଂ ବାସ୍ତବ କର୍ମାଚରଣ ପାଇଁ ଆଦର୍ଶଗତ ଭିତ୍ତିଭୂମି ରୂପେ ବ୍ୟବହାର କରିବା ନିମନ୍ତେ ତାଙ୍କର ଦକ୍ଷତା କେତେ, ତାହା ତନଖି କରି ଦେଖିବା ହେଉଛି ଅଧ୍ୟୟନର ମୁଖ୍ୟ ନିୟନ୍ତ୍ରଣ ଉପାୟ ।

ମାର୍କସବାଦ-ଲେନିନବାଦ ତତ୍ତ୍ୱର ଅଧ୍ୟୟନରେ ପରୀକ୍ଷା ପାଇଁ ପ୍ରସ୍ତୁତି ପର୍ବଟି ହେଉଛି ଗୁଣାତ୍ମକଭାବେ ଏକ ନୂତନ ସୋପାନ । ଏହି ସମୟଟି ଭିତରେ ଛାତ୍ରମାନେ ଅର୍ଜନ କରିଥିବା ଜ୍ଞାନକୁ ବିଧିବଦ୍ଧ କରି ସଜାଡ଼ନ୍ତି । ପୂର୍ବରୁ ଅଧିତ ବିଷୟବସ୍ତୁଟିକୁ ସାମଗ୍ରିକ ଭାବେ ମନନ କରି ସାରିବା ପରେ ହିଁ ଛାତ୍ରମାନେ ମାର୍କବାଦ-ଲେନିନବାଦ ବୈଜ୍ଞାନିକ ଜ୍ଞାନର ଏକ ବ୍ୟବସ୍ଥା ବୋଲି ଧାରଣା କରିବାକୁ ସକ୍ଷମ ହୁଅନ୍ତି; ତା'ର ଅନ୍ତର୍ନିହିତ ଯୌକ୍ତିକତାକୁ, ସମାଜ ଜୀବନରେ ତା'ର ଭୂମିକା ଓ ତାତ୍ପର୍ଯ୍ୟକୁ ଉପଲବ୍ଧି କରି ପାରନ୍ତି । ବିଷୟବସ୍ତୁକୁ ବାରମ୍ବାର ରୋମନ୍ଥନ ଓ ଜୀର୍ଣ୍ଣ କରି ସେମାନେ ତାକୁ ସ୍ମୃତିପଟରେ ବଦ୍ଧମୂଳ କରନ୍ତି, ଫଳରେ ନିଜର ଜ୍ଞାନକୁ ଗଭୀରତର କରନ୍ତି ଓ କୌଣସି କାରଣରୁ ତହିଁରେ କିଛି ଅଭାବ ରହିଯାଇଥିଲେ ପୂରଣ କରନ୍ତି । ଏହି ଉପାୟରେ ସେମାନେ ଶିକ୍ଷାକାଳୀନ କାଳରେ ରହିଯାଇଥିବା ଦୋଷତ୍ରୁଟି ଦେଖି ପାରନ୍ତି ଓ ସଂଶୋଧନ କରିବାର ଉପାୟ ପାଇଯାଆନ୍ତି ।

ପରୀକ୍ଷା ପାଇଁ ସାଙ୍ଗଠନିକ ଓ ମାନସିକ ପ୍ରସ୍ତୁତି, ମାନସିକ ପ୍ରସ୍ତାବର ସୁବିବେଚିତ ସଙ୍ଗଠନ, ସର୍ବୋଚ୍ଚ ଅଭିନିବେଶ, ସୃଷ୍ଟି ଓ ସଙ୍କଳ୍ପର ସାଧନା ଏବଂ ନିଜ ଜ୍ଞାନର ପ୍ରକୃଷ୍ଟ ପ୍ରଦର୍ଶନ ପାଇଁ ନୈପୁଣ୍ୟ ଅର୍ଜନ ଲୋଡ଼ା । ଛାତ୍ରମାନଙ୍କୁ ସେମାନଙ୍କ ପ୍ରଚେଷ୍ଟା ଓ ତାର ଫଳାଫଳକୁ ମୂଲ୍ୟାୟନ କରିବା ପାଇଁ ଶିଖାଇବା ଭିନ୍ନ ଭିନ୍ନ ପ୍ରକାରର ନିୟନ୍ତ୍ରଣ ରହିଛି ।

ପଦ୍ଧତି ଉପରେ ବା ଶିକ୍ଷଣ ବିଦ୍ୟା ଉପରେ କୌଣସି ସାହିତ୍ୟ ଯେ ଶିକ୍ଷାର୍ଥୀର ଶ୍ରେଣୀ ଗୃହରେ ବା ପାଠଚକ୍ରରେ ଅଧ୍ୟୟନକାଳୀନ ଦକ୍ଷତାର ନିର୍ଭୁଲ ନିରୂପଣ କଲାଭଳି ମାନଦଣ୍ଡ ଯୋଗାଇ ଦେବ, ତାହା ନୁହେଁ । ତେବେ ଏ କଥା ସ୍ପଷ୍ଟ ଯେ ମାର୍କସବାଦ-ଲେନିନବାଦ ପଠନ ପ୍ରକ୍ରିୟା ଗୁଡ଼ାଏ ଜାଣିବା ବିଷୟ ଆହରଣ କରିଦେବାରେ ସୀମିତ ହୋଇ ପାରେନା । ସ୍ୱାଧୀନଭାବେ ସୃଜନାତ୍ମକ କାର୍ଯ୍ୟ ଓ ମାର୍କସବାଦୀ-ଲେନିନବାଦୀ ତନ୍ତ୍ରାଧାରର ପ୍ରସ୍ତୁତିରେ ଜଡ଼ିତ ହେବା ବ୍ୟତିରେକେ ଏ ପ୍ରକ୍ରିୟା କଳ୍ପନା କରାଯାଇ ପାରେନା । ଆମର ବିଶ୍ୱାସ ଯେ ଶିକ୍ଷାୟତନରେ ଓ ପାଠଚକ୍ରରେ ଛାତ୍ରର ଅଗ୍ରଗତି ପରୀକ୍ଷା କଲାବେଳେ ନିମ୍ନଲିଖିତ ଶିକ୍ଷଣବିଦ୍ୟାଗତ ପ୍ରୟୋଜନୀୟତାଗୁଡ଼ିକୁ ବିଚାରକୁ ନଆଣିବା ଅପରିହାର୍ଯ୍ୟ :

ପ୍ରଥମ ହେଲା ଜ୍ଞାତବ୍ୟବସ୍ତୁ ଓ ଆଧେୟ ପ୍ରୟୋଜନୀୟତା, ଯାହାକି ପାଠ୍ୟକ୍ରମର ସମଗ୍ର କାର୍ଯ୍ୟକ୍ରମ ପୂରଣ ପାଇଁ ଉଦ୍ଦିଷ୍ଟ । କାର୍ଯ୍ୟକ୍ରମରେ ଥିବା ସମସ୍ତ ପ୍ରମୁଖ ସମସ୍ୟାର ଆଧେୟକୁ ଛାତ୍ରମାନେ ଅବହିତ ହେବା ଅବଶ୍ୟ ବିଧେୟ । ସେମାନେ ପାଠ୍ୟକ୍ରମରେ ମନୋନୀତ ଚିରାୟତ ଗ୍ରନ୍ଥ ଓ ସମସାମୟିକ ରଚନା ଅଧ୍ୟୟନ କରନ୍ତି । ସେଗୁଡ଼ିକୁ ବିଶ୍ଳେଷଣ କରିବା ଓ ସେଗୁଡ଼ିକରେ ଥିବା ବୈଜ୍ଞାନିକ ଓ ବାସ୍ତବ ସମସ୍ୟାଗୁଡ଼ିକୁ ଦେଖାଇଦେଇ ପାରିବା ପାଇଁ ସେମାନଙ୍କୁ ସମର୍ଥ ହେବାକୁ ହେବ ।

ଦ୍ୱିତୀୟରେ ମତାଦର୍ଶଗତ ଓ ପଦ୍ଧତି ବିଦ୍ୟାଗତ ପ୍ରୟୋଜନୀୟତା । ଏହା ମାର୍କସବାଦ-ଲେନିନବାଦର ତତ୍ତ୍ୱକୁ ଏକ ବୈଜ୍ଞାନିକ ଜ୍ଞାନର ବ୍ୟବସ୍ଥା ରୂପେ ଆୟତ୍ତ କରିବା ପାଇଁ ଉଦ୍ଦିଷ୍ଟ । ଛାତ୍ରମାନେ ମାର୍କସବାଦ-ଲେନିନବାଦର ମୂଳ ସୂତ୍ରଗୁଡ଼ିକର ମତାଦର୍ଶଗତ ତାତ୍ପର୍ଯ୍ୟକୁ ହୃଦୟଙ୍ଗମ କରିବା । ଏହି ସୂତ୍ରଗୁଡ଼ିକର ସାମାଜିକ ବିଜ୍ଞାନ ଓ ପ୍ରାକୃତିକ ବିଜ୍ଞାନ ପାଇଁ ପଦ୍ଧତିବିଦ୍ୟାଗତ ଭୂମିକା ବିଷୟରେ ଅବହିତ ହେବା ଅତି ଗୁରୁତ୍ୱପୂର୍ଣ୍ଣ ।

ମାର୍କସବାଦ-ଲେନିନବାଦ ତତ୍ତ୍ୱର ସୃଜନାତ୍ମକ ଉପଲବ୍ଧି ପାଇଁ ପ୍ରଧାନ ଆବଶ୍ୟକତା ହେଉଛି ସାମାଜିକ ବିକାଶର ସମସ୍ୟାଗୁଡ଼ିକର ହେତୁ ବ୍ୟାଖ୍ୟାନ କରିପାରିବାର ସାମର୍ଥ୍ୟ । ଏହି ପ୍ରୟୋଜନୀୟତା ଯେ ପୂରଣ କରି ପାରିଛନ୍ତି

ସେ ଆଜିର ବୁର୍ଜୁଆ ତଥା ସୁବିଧାବାଦୀ ବନ୍ଧୁଙ୍କର ତୀକ୍ଷ୍ଣ ସମାଲୋଚନା କରିବାକୁ ଓ ସଂଶୋଧନବାଦୀମାନଙ୍କ ଅପଚେଷ୍ଟାରୁ ମାର୍କସବାଦ-ଲେନିନବାଦ ତତ୍ତ୍ୱର ମୂଳନୀତିଗୁଡ଼ିକୁ ସଦମ୍ଭେ ରକ୍ଷା କରିବାକୁ ସମର୍ଥ ହୋଇଛନ୍ତି ।

ତୃତୀୟରେ ଯୌକ୍ତିକ ପ୍ରୟୋଜନୀୟତା । ଏହା ସଂଶ୍ଳିଷ୍ଟ ସମସ୍ୟାଗୁଡ଼ିକୁ ନିରବଚ୍ଛିନ୍ନ ଭାବେ ଏବଂ ବିଧିବଦ୍ଧଭାବେ ବାହାର କରିପାରିବାର ଓ ମାର୍କସବାଦ-ଲେନିନବାଦକୁ ବୈଜ୍ଞାନିକ ବିଶ୍ଳେଷଣର ପଦ୍ଧତି ରୂପେ ବ୍ୟବହାର କରି ପାରିବାର ସାମର୍ଥ୍ୟ । ନିର୍ଦ୍ଦିଷ୍ଟ ବୈଜ୍ଞାନିକ ଓ ବାସ୍ତବ ସମସ୍ୟାଗୁଡ଼ିକୁ ବିଶ୍ଳେଷଣ କଲାବେଳେ ସେଗୁଡ଼ିକର ନିର୍ଯ୍ୟାସକୁ ଓ ଆଧେୟକୁ ସ୍ପଷ୍ଟରୂପେ ବୁଝାଇଦେବା ପ୍ରୟୋଜନ ।

ଚତୁର୍ଥରେ ସାଂଗଠନିକ ପ୍ରୟୋଜନୀୟତା । ଏହା ଛାତ୍ରର ସ୍ୱତନ୍ତ୍ର ବ୍ୟକ୍ତିଗତ ବିଭବଗୁଡ଼ିକର ଭିତ୍ତି ଉପରେ ତାଙ୍କର ପରବର୍ତ୍ତୀ ପ୍ରୟାସ ପାଇଁ ବ୍ୟବହୃତ ହୋଇପାରିବା ଭଳି ସାଂଗଠନିକ ଉପାଦାନଗୁଡ଼ିକୁ ସୂଚିତ କରିବା ପାଇଁ ଉଦ୍ଦିଷ୍ଟ । ସମଗ୍ର ଅଧ୍ୟୟନ କାଳରେ ହୋଇଥିବା କାର୍ଯ୍ୟର ମୂଲ୍ୟାୟନ ହିଁ ସାଂଗଠନିକ ନୈପୁଣ୍ୟକୁ ସୂଚିତ କରିବ ।

ନିଜର ଅଧ୍ୟୟନ ପ୍ରତି ଦୋଷଗୁଣ ବିଚାରମୂଳକ ମନୋଭାବ ମାର୍କସବାଦ-ଲେନିନବାଦର ମୂଳନୀତିଗୁଡ଼ିକୁ ହୃଦୟଙ୍ଗମ କରିବା ପାଇଁ ଅସଲ ପ୍ରୟୋଜନୀୟତା । ବାସ୍ତବାନୁଗ ଆତ୍ମ-ବିଶ୍ଳେଷଣ ଛାତ୍ରଙ୍କୁ ସମସ୍ୟାଗୁଡ଼ିକ ଅଧ୍ୟୟନରେ ରହିଥିବା ଦୋଷତ୍ରୁଟି ଦେଖାଇଦିଏ ଏବଂ ତା'ର ନିରାକରଣର ମାର୍ଗ ବତାଇଦିଏ ।

# ଉପସଂହାର

ଜଣେ ମାର୍କସ, ଏଙ୍ଗେଲସ ଓ ଲେନିନଙ୍କ ପ୍ରଣୀତ ଗ୍ରନ୍ଥମାନ, ପାର୍ଟି ଓ ଆନ୍ତର୍ଜାତିକ କମ୍ୟୁନିଷ୍ଟ ତଥା ଶ୍ରମିକଶ୍ରେଣୀ ଆନ୍ଦୋଳନର ଦଲିଲମାନ ଅଧ୍ୟୟନ କରି, ଶିକ୍ଷାମୂଳକ ଭାଷଣ ଆସର, ପାଠଚକ୍ର ଓ ଆଲୋଚନାଚକ୍ରରେ ଯୋଗ ଦେଇ ଏବଂ ଅନ୍ୟାନ୍ୟ ରାଜନୈତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ମାର୍କସବାଦ ଲେନିନବାଦର ମୂଳସୂତ୍ରମାନ ଆୟତ୍ତ କରିପାରେ ।

ଗଣ-ମାଧ୍ୟମ, ସାହିତ୍ୟ, ସମ୍ବାଦପତ୍ର, ସ୍ମୃତିଗାଥା, ବିଜ୍ଞାନ ବିଷୟକ ଚଳଚ୍ଚିତ୍ର ଆଦିରୁ ବିଜ୍ଞାନ, ସମାଜବିଜ୍ଞାନ ଓ ରାଜନୀତି ସମ୍ପର୍କରେ ପର୍ଯ୍ୟାପ୍ତ ଜ୍ଞାନ ଲାଭ ହୋଇପାରେ ।

ପ୍ରାକୃତିକ ବିଜ୍ଞାନ, ସାମାଜିକ ଓ ରାଜନୈତିକ ଜ୍ଞାନ ଆହରଣ ପାଇଁ ମ୍ୟୁଜିୟମ, ପ୍ରଦର୍ଶନୀ, ସଭାସମିତି, ସାହିତ୍ୟ ଆସର ଆଦି ଉପଯୋଗୀ ଅଟନ୍ତି ।

ଲବ୍ଧ ସମସ୍ତ ତଥ୍ୟ ଓ ଆହୃତ ଯାବତୀୟ ଜ୍ଞାନକୁ ମାର୍କସବାଦୀ-ଲେନିନବାଦୀ ଦୃଷ୍ଟିକୋଣରୁ ବିଶ୍ଳେଷଣ କରି ଜଣେ ଜନତାର ଗଣତନ୍ତ୍ର ପାଇଁ, ନିର୍ଯ୍ୟାତନ ଓ ଶୋଷଣ ବିହୀନ ସମାଜ ଗଠନ ପାଇଁ ଏବଂ ମାର୍କସବାଦ-ଲେନିନବାଦ ତତ୍ତ୍ୱ ଦ୍ୱାରା ବିଜ୍ଞାନସମ୍ମତଭାବେ ପ୍ରତିପାଦିତ ବିକାଶର ବାସ୍ତବ ନୀତି ନିୟମ ଅନୁସାରେ ସମାଜର ସମାଜବାଦୀ ରୂପାନ୍ତର ପାଇଁ ଚାଲିଥିବା ଅହରହ ସଂଗ୍ରାମରେ ସୁଫଳ ଲାଭ କରିପାରେ ।

ଏହି କ୍ଷୁଦ୍ର ପୁସ୍ତିକା ଯଦି ପାଠକଙ୍କୁ ମାର୍କସବାଦ-ଲେନିନବାଦର ମୌଳିକ ସୂତ୍ରଗୁଡ଼ିକର ଅଧ୍ୟୟନ ଲାଗି ସାହାଯ୍ୟ କରିପାରେ, ତାହାହେଲେ ଗ୍ରନ୍ଥକାର ତା'ର ଶ୍ରମ ସାର୍ଥକ ହେଲା ବୋଲି ମନେ କରିବ ।

———